Published by Baidyanath Panda, M. A., for Bikash Pratisthan
Main Road, Jeypore ( Orissa )
and
Printed at Bikash Press, Jeypore ( Orissa ).

॥ ଚିତ୍ରାଙ୍କନ ॥
ଶ୍ରୀ ବିନୋଦଚନ୍ଦ୍ର ନାୟକ

॥ ପ୍ରଚ୍ଛଦପଟ ॥
ଶ୍ରୀ ଉଦୟ ନାରାୟଣ ଜେନା

॥ ପ୍ରକାଶକ ॥
ଶ୍ରୀ ବୈଦ୍ୟନାଥ ପଣ୍ଡା, ଏମ୍. ଏ.
ବିକାଶ ପ୍ରତିଷ୍ଠାନ
ଜୟପୁର ( ଓଡ଼ିଶା )

॥ ମୁଦ୍ରଣ ॥
ବିକାଶ ପ୍ରେସ୍
ଜୟପୁର ( ଓଡ଼ିଶା )

॥ ମୂଲ୍ୟ ॥
[illegible]୦

ରାମନାଥ ପଣ୍ଡା

ସୁହୃଦ୍ ବରେଷୁ—

ପୂର୍ବଘାଟ ଶୈଳ ଶିରେ ଲଗିଥିଲା ମେଘର ମୁକୁଟ
କୂଟଜର ଲଜାଞ୍ଜଳି ଦେଉଥିଲା ନମ୍ରେ ଗୃଧ୍ରକୂଟ ।
ତାହାର ଆବର୍ତ୍ତ ପଥେ ସେଇ ଦିନ ଦେଶାନ୍ତ୍ରୀ ଏକ
ଗୃହ ସ୍ୱପ୍ନେ ଗ୍ରାମ ସ୍ୱପ୍ନେ କରୁଥିଲା ଅଶ୍ରୁ ଅଭିଷେକ ।
ସେତେବେଳେ ଥାଳେ ତାର ଦେଇଥିଲ ଯେ ଟିକ କରୁଣା
ସ୍ମୃତିର ଭଣ୍ଡାର ଘରେ ଦେଖେଁ ତାହା ପାଲଟିଛି ସୁନା ।
ସେ ଦିନର ସେ ସାମାନ୍ୟ ଦାନ
ଶୁଣ ଶୁଣ କଣ୍ଠେ ତାର ଉଠାଏ ସେ ଆଜି ସାମ ଗାନ ।

ବିନୋଦଚନ୍ଦ୍ର ନାୟକ

# ସୂଚୀ

# ଆକାଶର କବିତା

ସଖି ମୁହିଁଯେ ଆକାଶ ବିଳାସୀ
ଦୂର ତାରା ଝଶତ ଅୟନେ
ବସି ଲେଖେଁ ମୁଁ ମାଟିର କବିତା
ରୂପ ବିଳାସେ ମେଘର ଶୟନେ,
କେବେ ଇନ୍ଦ୍ରଧନୁର ଉରସେ
ଯାଏଁ ଉଡ଼ି ମୁଁ ପୁଲକ ରଭସେ

କେବେ ବଜାଏଁ ବିଧୁର ମୁରଲୀ
ରଖି ଅଳସ ସପନ ନୟନେ ।
ସଖି କି ହେବ ମାଟିର ଦୀପାଳି
ଜାଳି ତୋହର ସନ୍ଧ୍ୟା କୁଟୀରେ
ପୋଛ ନୟନର ଲୋର ରାଧିକା
ସାଥି ଶୟନୁ ମୁଁ ନେଲି ଛୁଟୀ ରେ !
ତୋର ଶସ୍ୟ ଶୋଭନା ଧରଣୀ
ମୁଁ ତ ମୁରୁଛି ସାରଛି ସଜନ
ପିବ ଜ୍ୟୋତି ବଲ୍ଲରୀ ବିତାନେ
ମୋତେ ଡ଼ାକେ ଅପ୍ସରୀ ନଟୀ ରେ ।

ସଖି      ମେଖ ମାଳମାସ୍ୟା ବେଣୀରେ
ଓଠ ରଙ୍ଗ ଲେପରେ ରସ ନା
ବନ      ଗନ୍ଧ କୁସୁମେ ଆଜିର
ବାହୁ ବନ୍ଧ କର ନା ରଚନା,

କରି ମଂଜିର ରବେ ରଣିତ
ସ୍ବପ୍ନ ପଥେ ଦେଖ ଆହା ମିଳିତ
କେଉଁ      କାନ୍ତାର ପ୍ରୀତି ମଗ୍ନା
ଉଦ୍‌ଭ୍ରାନ୍ତା ଧ୍ୱକ୍ ବସନା ।

ମୁଁ ଗୋ      ସନ୍ତରି ନଭମାଳରେ
ରଚି ରସର ପରିଧି ନୃତ୍ୟ
ତାର      ଭୁଜ ବଲ୍ଲରୀ ବନ୍ଧେ
ପୀନ ଉରଜରେ ହେବ ଲୁପ୍ତ
ତାରେ ରମଣେରେ କରି ଅଧୀର
ନେବ ଓଠରୁ ରପୁଡ଼ି ମଦିର
ମୁହିଁ      ମତୁଆରି ହୋଇ ସଘନେ
ଘନ ଜଘନେ ରହିବ ସୁପ୍ତ ।

ମୋତେ      ମାଟିର କାହାଣୀ ଶୁଣାନା
ସଖି ତୋ ପଦେ ମୋ କୋଟି ମିନତି
ତୋର      କଣ୍ଠ-ତାପରେ ମଉଳେ
ଦେଖ ସଂଧ୍ୟାର ମଧୁ ମାଳତୀ,
ମୁଖ କୋକନଦେ ଅନୁଭବନ
ତୋର ଦଂଶେ ଅଶ୍ରୁ ନାଗିଣୀ
ତୋର      ହୃଦ ଦେବାଳୟେ ନଭଇ
ଏକା ମଉନେ ବେଦନା ଆଳତି ।

କାଳ— ପୁରୁଷ ଚଳଇ ଅସ୍ତ୍ରେ
ମୃଗଶିରର ଶୋଣିତ ଝରାଇ
ଦୂରେ ଅଭିଜିତ୍ ଶାଣେ ଛୁରିକା
ଅନୁରାଧାର ଚନ୍ଦମା ଥରାଇ
ଏଇ ନକ୍ଷତ୍ର ମହାରାସରେ
ମୁଁ ଯେ ଚଳେ ସମ୍ଭୋଗ ଆଶରେ
ଦୂର ନୀହାରିକା ଜ୍ୟୋତି ଚହ୍ନେ
ଯିବ ଗ୍ରହ ଉପଗ୍ରହ ଏଡ଼ାଇ ।

ମୁଁ ତ ଆକାଶ ହଂସ ମୋ ପାଇଁ
କପାଁ ଶାଖାର କୁସୁମ ଶଯ୍ୟା
କପାଁ ନୀଡ଼େ ସ୍ୱାଗତିକ କୂଜନ
ଅଭିମାନ ସଙ୍କୋଚ ଲଜ୍ୟା,
କପାଁ କାମ କୁଣ୍ଠିତା କାମିନୀ
କପାଁ ଶଶୀ ମୂର୍ଚ୍ଛିତା ଯାମିନୀ
କପାଁ ମୋ ପାଇଁ ମଧୁର ଛଳନା
କପାଁ ସରମୀ ବାସକ-ସଜ୍ଜା !

ଦେଖ ଧରାର ରକ୍ତ ଲେଖନେ
ମୋର ଅବଶ ଅଙ୍ଗ ସକଳ
ମୁଁ ଯେ ସନ୍ନ୍ୟାସୀ ସଖି, ପଳାଏଁ
ଯହିଁ ସଞ୍ଚିତ ସୁଧା କମଳ ।

ତାର ଗଭୀର ଗନ୍ଧ ପରଶେ
ମୁଁ ରେ ବକଶି ଉଠିବ ହରଷେ
ମୋର ଲାଞ୍ଛିତ ଯୁଗ ପକ୍ଷ
ତାର ସଳାପେ ହେବ ଧବଳ ।

# କେୟୁରେ କଙ୍କଣେ

'ହିଂସ୍ର ସାଗର ପର୍ଯ୍ୟନ୍ତ ବେଷରେ ଫୁଲ ଉଠେ
ଫେଣାଇ ଉଠଇ ମାଳ ଢେଉ
ଆକାଶ ପର୍ଯ୍ୟନ୍ତ ଇସାରା ଦିଅଇ ଝଡ଼ ହେତୁ
ପ୍ରଳୟର ପଦ ରଚନା ହେଉଛନ୍ତି ତେବେ ହେଉ
ବାହୁନେ ନାଙ୍ଗର ତଣ୍ଟ ଡୋର ହେଇ ଦିଗ ପାରେ
ଉପହାର ଦେବ ତତେ ମର୍କତ କେୟୂର ଏ,'
ବଲ୍ଲଭୀ ଭଣେ ।

ବାହୁଛି ନାଉରୀ ଭିଡ଼ିକାତ
ତଥାପି ତରୀର ମଙ୍ଗ ସଳଖି ନାହିଁ ରହେ ।
ବାହୁଛି ନାଉରୀ, କପାଳରୁ
ଝର ଝର ପଡ଼େ ସ୍ୱେଦ ଧାର
କଲ୍ଲୋଳ ଉଠେ ଜୁଆରେ ଜୁଆରେ କଳରବେ
ଚଣ୍ଡ କି ଜଳ ଦେବତାର !

ବଲ୍ଲଭୀ ଭାଷେ, 'ବାହାରେ ନାଉରି ତରୀ ତୋର
ପଶ୍ଚାତେ ଦେଖ
ଧୂଳି ଉଠେ ଉପକୂଳ ଧାରେ
ଭ୍ରାତାର ଆଦେଶେ ଅଶ୍ୱାରୋହୀଙ୍କ ଦଳ ଆସେ
ବିଦ୍ୟୁତ ନାଚେ ଉଲଙ୍ଗ ଶତ ତଲବାରେ ।
ବଲ୍ଲଭ ଗଳା ଶୋଣିତେ ଯଦବା ବେଳାଭୂମି
ରଞ୍ଜିବେ ତେବେ କି ଲାଭ ଏ ପ୍ରାଣ ଧରିବାର
ବାହିନେ ନାଉରି ତରି ବେଗେ ନେ ରେ ପଛେ ମୋର
କର କଙ୍କଣ ଉପହାର ।'

ବାହୁଛି ନାଉରି ଭିଡ଼ି କାତ
ମାଂସ ପେଶୀ କି ଫାଟି ପଡ଼େ,
'କେୟୂରର ଅବା କଙ୍କଣ ଲୋଭେ ନୁହେଁ, ତୋର
ପ୍ରଣୟେ କନ୍ୟା ! ନତ୍ତ କରେଁ ।
ବାହିନେବି ତରି ଲହରି ସଙ୍ଗେ ଯୁଝି ଆଜ
ସାଗର ପାଣିରେ ପାଣି କରି ଦେଇ ରକତ ଏ ।'
ମାନେ ନାହିଁ କାତ, ଜଳ ଘୂର୍ଣ୍ଣିରେ ବୁଲେ ତରି
ମେଘ ବ୍ୟୂହରେ ବିଦ୍ୟୁ ତରଳ ଧାରା ବହେ ।

ଅଶ୍ୱଖୁରର ଟାପୁ ଶୁଭେ ତଟ ଉପଳରେ
ବଲ୍ଲଭ ବୁକେ ବଲ୍ଲଭୀ ଢ଼ାଳି ତନୁଲତା
କହେ, 'ନାଉରିରେ କ୍ରୁଦ୍ଧ ଭ୍ରାତାର ଇଂଗିତୁଁ
କ୍ରୁଦ୍ଧ ସାଗର ଇଂଗିତେ ଅଛି କୋମଳତା ।
ବାହି ନେ ରେ ତରି ।' ବାହୁଛି ନାଉରି ଭିଡ଼ି କାତ
ରକ୍ତର ସୁଅ ନାସାରନ୍ଧ୍ରରୁ ଝରିପଡ଼େ
ଫୁତ୍କାରେ ନଭ ଛୁଷ୍ଟ ଲହରି ଶ୍ୱେତ ଫେଣ
ନିରନ୍ଧ୍ର ନଭୁ ଅଜସ୍ରଧାରା ଝର ଝରେ ।

ଉପତଟ ଧାରେ ଅଶ୍ୱାରୋହୀର ଦଳ ଦେଖେ
ବସ୍ମୟ ରେଖା ଭାଲେ ଲେଖି
ଜଳ ଭଉଁରରେ ତରୀ ଘୂରବୁଲେ ଅହରହ
ଖେଳାଉ ପିତୁଳା ଏତେ ସେ କ ।
ପ୍ରିୟ ଗଳଦେଶେ ଲଗ୍ନ ପ୍ରିୟାର ବାହୁ ଏକ
ଅପର ବାହୁତା ଆଶ୍ରୟ ଖୋଜେ ନଭ ଦେଶେ
ପ୍ରୀତର ପିୟୂଷେ ଉଚ୍ଛୁଳା ବୁକୁ ଯେ ତରୁଣୀର
ମରଣେ ଖିତତା କାହିଁ ଲେଶେ !

'ଫେରଆ ଭଗ୍ନି; ବଲ୍ଲଭେ ତୋର ଦେଲ କ୍ଷମା ।'
ଭ୍ରାତାର କାକୁଛ କଣ୍ଠ ବ୍ୟଥାରେ ଯାଏ ଫାଟି
ଘୋର ଗର୍ଜନେ ବଜ୍ର ବାଜଇ ମେଘେ ମେଘେ
ତର୍ଜନ ଘୋଷେ ଊର୍ମି ଉଜାଡ଼େ ତଟ ମାଟି ।
ସହସା ବାଜଲ ପ୍ରଳୟ ଶିଙ୍ଗା ମହାରବେ
ଆକାଶ ସାଗର ତରସି ଉଠଇ ଥର ଥର
ମେଘ ଚୂର୍ମ୍ବିତ ଊର୍ମି ଆସିଣ ଗ୍ରାସକଲ
ଚକତେ ତରୀର କଳେବର ।

ଢଗେ ଢଗେ ଶୁଭେ ଢଗଙ୍ଗନାର ହୁଳହୁଳି
ମରଣ ମିଳନ ଅଭିଷେକେ
ତଲ୍‌ବାର ଥୋଇ ସମ୍ମାନେ ମଥାନତ କରେ
ଅଶ୍ୱ ଆରୋହୀ ଏକେ ଏକେ ।

# ଅନ୍ୟ ବନ୍ଦର

ବନ୍ଧୁ, ମୁହିଁ ଫେର ଯିବ
ଫେର ଯିବ ଅନ୍ୟବନ୍ଦରରେ

ଝଡ଼ର ବନ୍ଦନା ଯନ୍ଧ ଜଗଙ୍ଗନା ମାଳଶ୍ରୀ ଛନ୍ଦରେ
ଗାଇଉଠେ । ଜଳାରଣ୍ୟେ ଶଙ୍ଖସ୍ୱନେ ଉଠିଲେ କଲ୍ଲୋଳ
ପାଲରେ ଲାଗିଲେ ଆସି ବାଣିଜ୍ୟବାୟୁର ରୁଦ୍ର ବେଗ
ହାଣିଲେ ମନ୍ଥର ମେଘେ ବିଜୁଳୀର ଶାଣଦିଆ ଛୁରୀ
ତରଙ୍ଗେ ତରଙ୍ଗେ ଦୋଳ ମତ୍ସ୍ୟକନ୍ୟା ଦେଲେ ଢୁଳଢୁଳ
ଫେରିଯିବ ଅନ୍ୟ ବନ୍ଦରରେ
ମୋର ଅବସ୍ଥାନ ବିନ୍ଦୁ ବନ୍ଧୁ, ଲେଖି ଜଳର ଅକ୍ଷରେ ।

ତୁମରି ବନ୍ଦରେ
ପଣ୍ୟବାହୀ ପୋତ ରଖି ମୁହିଁ ରହେଁ ଯେବେ ତଟପରେ
ପ୍ରଶଂସ ନୟନ ତୋଳି,
ଦେଖେଁ ଲକ୍ଷ ବିପଣୀ ବିଥିର
ଆକର୍ଷଣୀ ବିଜ୍ଞାପନ । ବାଣିଜ୍ୟ ଲକ୍ଷ୍ମୀର
ପ୍ରସାଦର ମାଲ୍ୟଲଗ୍ନ ସୁଭଗ ବଣିକ
ପାନ୍ନା ନୀଳା ଜହରତ୍ ଗୋମେଦ ମାଣିକ
ବିନିମୟେ ବ୍ୟସ୍ତ ପ୍ରାଣ···।

କେବଳ ମୁଁ କଥାର ବେପାରୀ
ନଙ୍ଗର ପକାଇ ପୋତାଶ୍ରୟର ଏ ପାରି
ବସିଛି ଗବାଖ ଆଶେ···,
ବହୁଦୂରେ ପ୍ରସନ୍ନ ଆକାଶ
ହସଇ ବନ୍ଦରର ସର୍ମ୍ୟ ।
ଉଲଗ୍ନ ପ୍ରକାଶ
ତଳେ ସାଗର ତନୁର ।
ଚିହ୍ନାପତ ପ୍ରାୟ
ପୋତ ମୋର ସ୍ଥିର ରହେ, ହାୟ !

ଚପଳ ଏ ପଣ୍ୟ ଯେବେ ଫିଙ୍ଗେ ବସି
ମାରବ ଅସ୍ଥିରେ
କଚ୍ଛୁ ନଏ କ୍ରୀଡ଼ାରତ ଶିଶୁ, କଚ୍ଛୁ
ଭାସିଯାଏ ତରଙ୍ଗର ଶିରେ
ଚନମସ୍ୟେ ତଟ ଦେଶ ଜନତାର ଭର୍ତ୍ସନା ଆଣଇ
ଫେରଯିବ ତେଣୁ ବନ୍ଧୁ,
ମୁଁ ବି ଆହା ସୁଦୂର ପ୍ରଣୟୀ !

ମୁଁ ତ ଫେରଯିବ
ତୁମର ଏ ଚର୍ଚ୍ଚିତା ପୃଥିବୀ
ପଶ୍ଚାତୁ ଡ଼ାକବ ମୋତେ,
ତୁମର ଏ ଘଟ ଶ୍ୟାମ ଶିରୀ
ଇନ୍ଦ୍ର ମାଳ ଗିରି
ଅରଣ୍ୟର ଶୀର୍ଷ ନଭଚୁମ୍ବୀ
ଶସ୍ୟ ପାଂଶୁ ଏ ତ୍ରିକୋଣ ଭୂମି
ପୋତର ବନ୍ଦାଣ ଲାଗି ଲଜ୍ଜିତା ସାଧବୀ
ବହୁବର୍ଣ୍ଣ ଅଂଚଳର ଇନ୍ଦ୍ରଧନୁ ଛବି
ଶୈବାଳସ୍ତୂ ଗାହନଟୀ ଭଗ୍ନ ଚନ୍ଦଶିଳା
ଡ଼ାକବତ ବାରମ୍ବାର ଯାହା ମୋତେ ମୁଗ୍ଧ କରଥିଲା ।

ମୁଁ ତ ଫେରିଯିବ ବନ୍ଧୁ, ଫେରନ୍ତ ଜୁଆରେ
ଚଡ଼ାରେ ଲଗିଛି ମଙ୍ଗ
ତେଣୁ ଏ ଅସହ୍ୟ ଅପେକ୍ଷାରେ
ବିତାଏଁ ଏ ଦିବା ଶେଷ !
ସେ ବା କେଉଁ ଦେଶ
କେଉଁ ପତାଶ୍ରୟ
ସେ କେଉଁ ଦିଗଦର୍ଶିକା ଯାପଶ୍ରମ
ସେ ବା କେଉଁ ନକ୍ଷତ୍ର ନିର୍ଣ୍ଣୟ
ସେ କେଉଁ ସାଗରେ
ବାନ୍ଧିନେବ ତଣ୍ଟ ମୋର କୁଣ୍ଠିତ ଅନ୍ତରେ !

ତହିଁ ଥିବ ଉପକୂଳ ପାନଶାଳା
ନାବିକର ବିଶ୍ରାମ ଆଗାର
ନିର୍ଲଜ୍ଜା ନର୍ତ୍ତକୀ କେହି ପାନ ପାତ୍ର ଚୁମିଦେବ
ଇଡ଼ ମଦ୍ୟ ଧାର
ଅଶ୍ଳୀଳ ନୃତ୍ୟ ଓ ସ୍ୱଳ୍ପ ପରିଚ୍ଛଦ, କାମିମା ଇଂଗିତ
ଅର୍ଥ ଆଜ ତମିସ୍ରାର ଗୀତ
ହୁଏତ ବା ମିଳିବ ପ୍ରଚୁର
ହୁଏତ ପ୍ରଶସ୍ତି ନାହିଁ ତହିଁ ବନ୍ଧୁ
ହୁଏତ ବା ନାହିଁ ପଣ୍ୟ ମୂଲ !

ସେଇ ଦୂର ବନ୍ଦରରେ ନିରୋଳା ସମୟେ
ସେ କେଉଁ ସୁଲଭ ଏକ ଭୋଜନ ଆଳୟେ
ତଥାପି ତ ବସି ଆନମନା
ଭୁଲିଯିବି ଅନ୍ତତଃ ମୁଁ ତୁମର ଏ କୁତ୍ସିତ ଭର୍ତ୍ସନା !
ହୁଏତ ଭ୍ରମରେ
କଳ୍ପନା ଜାଗିବ ନାହିଁ ଫେରିବାକୁ ଆଉ ତୁମ
ଏ ଦେଶ ବନ୍ଦରେ !!

# ଏକ ରାଜହଂସ

ନଗରର ତ୍ରିକୋଣ ଭୂମି ।
ସମୁଦ୍ରର ଶୁଭ୍ର ଫେଣ ହାସ
ନାରିକେଳ ଝାଉଁବଣ ବେଣୀ ଆଉ କାଶ
ଦିଗନ୍ତରେ ଚିକଣ ସୁନା ର
ଚିତ୍ରଲେଖା; ମେଘର ମିନାର ।
ମାୟାବିନୀ ଧରିତ୍ରୀର ତନୁଗନ୍ଧ ଭାସେ
ଉଷା କିରଣ ଲୋହିତେ ମନ୍ଥର ବତାସେ ।
ଛାଡ଼ି ପରିଚ୍ଛନ୍ନ ଆଉ ସ୍ୱଚ୍ଛ ଆକାଶ
ଲଭିବାକୁ ଧରାର ପରଶ
ଡେଣା ମେଲି ଉଡ଼ିଆସେ ମୁହାଣ କିନାରେ
ଏକ ରାଜହଂସ ।

ତଟ ତଳ କ୍ଷେତ୍ର ଶିଶୁପତଙ୍ଗ ଓ ମୀନ
ଶୀତଳ ରଜତ ପୁଷ୍ପ ଜଳଜ ଉଦ୍ଭିଦ ଦ୍ୱିପ୍ରହର ଦିନ
ବିସ୍ତାରିତ ନୀଳ ଜଳ ଲୀଳା ସନ୍ତରଣ
ଉଦ୍‌ବେଳ ବିଭ୍ରମ ଶୟନ
ଜୀବନର ପାତ୍ରେ ଧରା ଭରିଦିଏ ରୂପ ଗନ୍ଧ ରସ
ଆକାଶର ପଥ ଛାଡ଼ି ଧରଣୀର ଚୁମ୍ବନ ମାଗଇ
ଏକ ରାଜହଂସ ।

ଅପରାହ୍ନ ନଇଁ ଆସେ ବେଳାତଟେ,
ନାଗଫେଣି ଗୁଚ୍ଛ।
ନିର୍ଲଜରେ ବାଢ଼େ କଳା କାୟା ।
ଶ୍ୟେନ ପକ୍ଷୀ ଫେରେ ତଟ ବନେ
କ୍ଲାନ୍ତ ରୂପସୀର ସ୍ୱପ୍ନ ଉପଳ ଶୟନେ
ଲୋଟି ପଡ଼େ ନଦୀ,
ଗନ୍ଧକ ହଳଦୀ
ରୌଦ୍ର ଧୁଏ ନକ୍ଷତ୍ରଭ ଶରସ,
ନିବିଡ଼ ଶ୍ୱାସରେ ଖୋଜେ ଧରା ଦେହ ସ୍ୱାଦ
ଏକ ରାଜହଂସ ।

ସହସା ସ୍ଖଳନ କରେ ନୀଳ କାଞ୍ଚୁଳିକା
ବକ୍ଷତଟ୍ ରଜନୀ ବାଳିକା
ତାର ସୁନାଫୁଲ ଭରା ମୁକୁଳା କବରୀ
ସେ କେଉଁ ପ୍ରେମିକ ମନେ ତୋଳେ ଆଶାବରୀ,
ସାଗର ସଂଗମେ ଲାଗେ ଅନୁଭବ କଜ୍ଜଳ
ଦିଗନ୍ତେ ଅଚ୍ଛିଦ୍ର ବାଦଲ ।
ରାଜହଂସ ପଥ ତାର ଭୁଲେ
ସାନ୍ଦ୍ର ଉପକୂଳେ ।
ଆକାଶ ପଟ୍ଟରେ;
"ମୂଢ଼ ! ପାଇଲୁ କି ଧରାର ପରଶ ?"
ବିଷାକ୍ତ ମୃତ୍ୟୁର ସ୍ପର୍ଶେ ବିଷର୍ଣ୍ଣ ମୁହାଣେ
ଢଳିପଡ଼େ
ଏକ ରାଜହଂସ ।

# ଇଳାବୃତ୍ତ

୧

ବାହ୍ୱନେ ବାହ୍ୱନେ ଆକାଶ ନାବିକ ତରୀ ମୋର
ଇଳାବୃତ୍ତର ପରପାରେ
ସାଗର ଶୋଭନା ଭୂଦେବୀ ଶୁଭ୍ର ସଇକତେ
କରୁଣ ନୟନେ ଗୃହାଁନା ରେ ।
ମେଘର ମିନା:ରେ ପାରକରି ନେ ରେ ମୋର ତରୀ
ଶୁଣ୍ ନା ଡ଼ାକେ ବା ଫେଣ ଉଚ୍ଛ୍ୱାସେ ଜଳପରୀ,
ଅସ୍ତଗିରିର ଉହାଡ଼େ ଗଲାଣି ରବି ରଥ
ମଦ୍ୟପ ସମ ଚନ୍ଦ୍ର ଆସଇ ଦିଗଧାରେ
ବାହ୍ୱନେ ବାହ୍ୱନେ ଆକାଶ ନାବିକ ତରୀ ମୋର
ଇଳାବୃତ୍ତର ପର ପାରେ ।

୨

ଆତୁର ଅଛୁ ରେ ଆନ ନୀଳାକାଶ ଶ୍ୟାମଭୂମି
ଆନ ସୃଷ୍ଟି ସେ ଦେବତାର
ଦିନ ସରେ ତହିଁ ଅଳସବିଳାସେ, ରାତି ଆସେ
ଶପ୍ପନ ସୋହାଗେ ବନିତାର
ତହିଁର ଝରଣା ଧାରା ଶୀତଳର ସମାକୁଳ
ସନ୍ତରି ଧା·ଏଁ ନୟୂତ ବାଳିକା ବନଫୁଲ

ଭୃଙ୍ଗ ପିନ୍ଧୁଛି ଥାଏ ପାଖୁଡ଼ାର ପଞ୍ଜରରେ
ରଥାଙ୍ଗ ନାହିଁ ଯାଏ ଗୁଡ଼ି ବଧୂ ନଦୀ ଧାରେ
ବାହନେ ବାହନେ ଆକାଶ ନାବକ ତରୀ ମୋର
ଇଳାବୃତ୍ତର ଆର ପାରେ ।

୩

ସେ ଭୂମି କନାରେ ଭିଡ଼ ତରୀ ମୋର ନାବକ ରେ
ଦୀପିତ ଚହିଁରେ ଦୀପଶିଖା
ମାଳ ମାଳ ବେଣୀ ନୀଳତର ବଳୟେ, ଦେଖ ସେ ତ
ନୁହେଁ ମାରଗ୍ରସ୍ତା ମରୀଚିକା ।
ଲେଲିହ ଲୋହିତ ପଥ ପିଚ୍ଛିଳ ଧରଣୀ ଏ
ବିଷ ବିଶ୍ୱାସେ କି ଅପରିମିତ ବ୍ୟଥା ବଏ
ଜୀବନ ମରୁ ଏ ନାଗଫେଣୀ ଦେହୀ ଚୈତକ
ପଥଶେଷ ତାର ମୁକ୍ତ ମରଣ ଅଭିସାରେ ।
ବାହନେ ବାହନେ ଆକାଶ ନାବକ ତରୀ ମୋର
ଇଳାବୃତ୍ତର ପର ପାରେ ।

୪

ମୁଁ ଶୁଣିଛୁ ଆହା କଦାପି କବିତା ନାହିଁ ଗାଏ
ବିଭ୍ରମ ସୁରେ ତହିଁ କବି
ମେଘେ ବିଦ୍ୟୁତ ନୃତ୍ୟେ ନୂପୁର ବାଜେ ସ ତ
ବୃତ୍ତ ନୁହେଁ ତା ଭୈରବୀ ।
ଝରଣା ଲଂଘେ ଲମ୍ଫନେ ସତ ଗିରି ଦରୀ
ତଥାପି ବନ୍ୟା କନ୍ୟା ନୁହେଁ ତା ସହଚରୀ
ବନ୍ଦୀ ତହିଁ ରେ କେବଳ ତରୁଣ ବର ତନୁ
କେଉଁ ସୁନନ୍ଦା ଭୁଜ ବଲ୍ଲରୀ କାରାଗାରେ
ବାହନେ ବାହନେ ଆକାଶ ନାବକ ତରୀ ମୋର
୨ ଇଳାବୃତ୍ତର ପର ପାରେ ।

୫

ଶସ୍ୟ ସଜ୍ଜାରେ ନ ଚଳେ ପ୍ରବାସେ ଦୂରେ କେନ୍ଦ୍ର
ଲୋଚକ ନ ଡ଼ାଳେ ଦୋସର କେ
ପ୍ରଭାତ ଆସଇ କଦମ୍ବ ଅବା କଥା ବଚନ
ଅଶୋକ ଶାଖେ ବା କୁରୁବକେ ।
ଚନ୍ଦ୍ରା ପରଶ ଖାରୁ ଆଖିପତା ମାଗୁଥାଏ
ପୁଷ୍ପ ପରାଗ ସ୍ୱାଦ ଆସି ଓଠେ ଲଗୁଥାଏ
ସପନ ଚହ୍ନିଁତ ସତ ହୁଏ ଆହା ଜୀବନ କା
ନସରେ ଶୋଣିତ ସ୍ୱେଦର ରଣର ରଚନା ରେ
ବାହ୍ୱନେ ବାହ୍ୱନେ ଆକାଶ ନାବକ ତରୀ ମୋର
ଇଳାବୃତ୍ତର ପର ପାରେ ।

୬

ଏ ଇଳାବୃତ୍ତେ ଗଣିକା ଗାଇଣ ମାୟା ଗୀତି
ପଥିକେ ଭୁଲାଇ ନଏ ବାସେ
ରୂପତଳେ ଏଥେ ନାଗୁଣୀ ଲୁଗୃଏ କଳାଫଣା
ସୁର ମିଶାଯାଏ ସୁଧା ସାଥେ
ତୃଷାର ତୃପତ୍ତି ଏଥେ କେବେହେଲେ ନାହିଁ ମିଳେ
କୁଂଠିତ ପ୍ରାଣ ନବଟଶ ସରଇ ତିଳେ ତିଳେ
ଆଶା ଆଶ୍ୱାସ ବିଫଳ ସିନା ସେ, ହଜ ଯାଏ
ହତାଶାର ଛାରେ ବିକ୍ଷୋଭ ବିଷେ ହାହାକାରେ
ବାହ୍ୱନେ ବାହ୍ୱନେ ଆକାଶ ନାବକ ତରୀ ମୋର
ଇଳାବୃତ୍ତର ପର ପାରେ ।

୭

ଶଶି ଶଂକିତ ଛାର ବନେ ଚହ୍ନିଁ ଯମୁନା ର
ମୁରଲୀ ଡ଼ାକଇ ରାଧା ରାଧା
ବୃନ୍ଦମାୟା ଏଡ଼ ରାସେ ନୃତ୍ୟଇ ଭୂଆଶୁଣୀ

ଛାଡ଼ି ଶଂକୋଚ ଲଜ ବାଧା,
ତହିଁ ବାହି ନିଅ ଆକାଶ ନାବିକ ତରଣୀ ଏ
କ୍ଳାନ୍ତ ମୁଁ ମଣେ ଧୂଳି ମଳିନ ଧରଣୀ ଏ
ମୁକୁଳିବ ମୁହିଁ ମାପମାନେ ତହିଁ ସଞ୍ଚରିବେ
ଭୁଲିବି ଜୀବନ ଦୁଷ୍ଟ ସପନ ପରଖାରେ
ବାହିନେ ବାହିନେ ଆକାଶ ନାବିକ ତରୀ ମୋର
ଇଳାବୃତ୍ତର ପର ପାରେ ।

# ଜମିନ୍ ଆସ୍‌ମାନ୍

୧

ତଳରେ ଜମିନ୍ ଉପରେ ଏ ଆସମାନ୍
ଏ ଜୀବନ ସଖି ଖୋଦାର ମେହେରବାନ
ଗାଅ ଗାଅ ତେଣୁ କ୍ଷଣିକର ଜୟଗାନ
କଣ୍ଠରୁ ପୋଛ କୁଣ୍ଠିତ ମୂଢ଼ ବାଣୀ ।
ଭଙ୍ଗୁର ସିନା ପାନ ପାତ୍ର ଗୋ ତୋର
ଅଙ୍ଗୁର ରସ ଅଙ୍ଗୁଳି ଧାରେ ପୀଡ଼ି
ତୃଷିତ ମୋହର ଶୁଷ୍କ ଅଧର ତଳେ
ମଧୁଧାର ଦିଅ ଅଳପ ଅଳପ ଛଡ଼ି
ମୃଗ ତୃଷ୍ଣାର ସପନ ବିଳାସ ପାଇଁ
ମରଣ ପରେ ମୁଁ ସ୍ୱର୍ଗର ନାହିଁ ମାନି
ତଳରେ ଜମିନ୍ ଊର୍ଦ୍ଧ୍ୱରେ ଏ ଆସମାନ୍
ଜାଣେ ଏ ଜୀବନ ଖୋଦାର ମେହେରବାନ

୨

ନୈଶ କୁସୁମ ବିକସେ ପୁଲକ ରାଗେ
ମନ୍ଥର ଦେଖ ଗଂଧ ମଦିର ବାୟୁ
ଦ୍ୱାଦଶୀ ଜୋଛନା ପାଣ୍ଡୁର ଭଜେ କ୍ରମେ
ଅସ୍ତ ଅଚଳେ ଚନ୍ଦ୍ର ବି ଗତ ବାୟୁ,

ଶୟନେ ବଧୂର ଯାମିନୀ ଯାପନା ସଖି
ଆଖି କଜ୍ଜଳେ ଲେଖନା ବିରହ ଗୀତ
ନବ ପ୍ରଭାତର ମିଳନ ରାଗିଣୀ ଉଠ
ଅନୁଶୋଚନାର ତିମିର ହେଲଣି ଇତି ।
ସୃଷ୍ଟିର ଲାଗି ଆହ୍ୱାନ ସମସ୍ତ ଲୋଡ଼ା
ଆଳସ୍ୟର କାହିଁ ଅବସର ଅଭିମାନୀ,
ତଳରେ ଜମିନ୍ ଉପରେ ଏ ଆସମାନ୍
ଜାଣେଁ ଏ ଜୀବନ ଖୋଦାର ମେହେରବାନ ।

୩

ରଜ କର୍ପୂରେ ଇନ୍ଦ୍ର ପ୍ରଦୀପ ଜାଳ
ତରୁଣ ତନୁରେ ଲେପ ଚନ୍ଦନ ଭୂଷା
ପ୍ରାଚୀର ତୋରଣେ କୁଙ୍କୁମ ଅନୁଲେପି
ଆସେ ଲାଜେ ଆସେ ସୁର ଅଙ୍ଗନା ଉଷା,
ନୂତନ ଦିନର ସ୍ୱାକ୍ଷର ସେ ଯେ ଆଣେ
ବନ୍ଦନା ରଚ ନୂତନ ଶପଥେ ପ୍ରିୟ
ସମ୍ମୁଖେ ପଥ ଅରୁଣିତ ଅନୁରାଗେ
ଆଶିଷର ସମ ଲଗ୍ନ ଏ ବରଣୀୟ,
ଏଇ ମିଳନର ମୂର୍ଚ୍ଛନା ଏକ ତାନେ
ଆ ସଖି ଗାଇବା ଆମେ ରେ ଯୁଗଳ ପ୍ରାଣୀ
ତଳରେ ଜମିନ୍ ଉପରେ ଏ ଆସମାନ୍
ମଧ୍ୟେ ଜୀବନ ଖୋଦାର ମେହେରବାନ ।

୪

ତୁହେଁ ଏ ଜୀବନ ବିରାଟ ଭୂମିକା ତୁହେଁ
ପ୍ରଭାତୀ ସଳିତା ଏ ପରା ତୁଳସୀ ମୂଳେ
ପାନ୍ଥଶାଳାରେ ପଥିକ କି ଆମେ ଦୁହେଁ
୨ ନାବିକ କି ଆମେ ଦୂରବାହୀ ନଦୀକୂଳେ,

ରୂପ ମଂଚର ସ୍ୱଜନନ୍ଦ ସ୍ୱଜନନ୍ଦୀ
ରଚନା କରିବା ବିଳାସର ଅଭିନୟ
ଜହ୍ନିଲତାର କୁସୁମ ବିଭବ ସମ
ଗାଇବା କ୍ଷଣିକ ଜୀବନର ଜୟ ଜୟ ।
ଭୁଲି ଯାରେ ସଖି ସ୍ନେହ ଶତ ଅପମାନ
ସ୍ନେହ ବ୍ୟର୍ଥତା ମର୍ମ ଘାତକ ବାଣୀ,
'ତଳରେ ଜମିନ୍ ଉପରେ ଏ ଆସମାନ୍',
ଗାଅ, 'ଏ ଜୀବନ ଖୋଦାର ମେହେରବାନ ।'

# ମଣି ଅଙ୍ଗୁରୀୟ

୧

ଆକାଶ ତମସା ତଟେ ସୃଷ୍ଟି ହେଲା ଭୋର,
ମ୍ଳାନ ଅପରାଜିତା କି ଖୋଷା ତଳେ ତୋର
ଶୋଭୁଛି ରେ ସଖି,
ତୋର ଭ୍ରୂଲତାର ସମ ଡେଣା ମେଲି ଉଡ଼ିଯାଏ ଦୂରେ
ଦୂରେ କେଉଁ ନିଶାଚରୀ ପକ୍ଷୀ ।
ତୋ ଶଙ୍ଖ ଧବଳ ସୌଧ କଳସର ତଳେ
ସ୍ୱର୍ଣ୍ଣ ତାରା ଅଭିସାରେ ଚଳେ
ସେ କି ଗଜମୋତି
ସେ ରାଜହଂସର ସମ ଉଚ୍ଚ ବକ୍ଷପରେ
ଢାଳି ଦିଏ ଜ୍ୟୋତି !

୨

ଭିନ୍ ଦେଶୀ ପଥିକ ମୁଁ ଜଗି ହୋଇ ରହେଁ
ତୋ ଗବାକ୍ଷ ଅରଣ୍ୟର ତଳେ
ଉପତ୍ୟକା ଶସ୍ୟ କ୍ଷେତ୍ର କ୍ଷିପ୍ର ସ୍ରୋତା ଝରଣାରେ ଲଂଘି
ଆସିଥିଲି ଏବେ ଫେରି ଚଳେଁ ।
କର୍ପୂରରେ ସୁବାସିତ ପଲ୍ୟଙ୍କର ଶୁଭ୍ର ଶଯ୍ୟା ପରେ
ଗନ୍ଧନ ଯେ ଏ ପଦାଙ୍କ ତୋର

ଭାଜବ ନାହିଁ କି ସଖି, ଦିଗନ୍ତରେ ଶୃଙ୍ଖା
ସୁନେଲି ରେଖାର ତଟେ ରାଜି ହୁଏ ଭୋର,
ଦୂରେ ଶୁଭେ ପ୍ରଭାତ କାକଳି
ବନ ଗ୍ରାମ୍ୟ ମଦାଳସା ସୀମନ୍ତିନୀ
ଚଳେ ଧୀରେ ପାହାଡ଼ୀ ନଦୀରେ
କାଖେ ଜାକି ମାଟିର ଗଗରୀ ।

୩

କାହିଁ ତୋର ଦୁର୍ଗ ମୁଖେ ସେ ଦିନର ଅପୂର୍ବ ପ୍ରହରୀ
ଏ କି ଦେଖେଁ ରାଜନନ୍ଦିନୀ ରେ
ମ୍ଳାନ ହୋଇ ଆସୁନି ତ ଆକାଶ ପ୍ରଦୀପ
ଦେଖା ଦୁର୍ଗ ଶିରେ
ବୀଣା ହସ୍ତେ ସଇରନ୍ଧ୍ରୀ ଶଯ୍ୟା ପ୍ରାନ୍ତେ
ବସି ଆଜ ତୋର
ନିଭାଇ ସ୍ୱର୍ଣ୍ଣ ପ୍ରଦୀପ ଗାଉନତ
ଉଠ ଯେମା, ନିଶିହେଲା ଭୋର ।
ପାଶେ ନାହିଁ ସହଚରୀ ପୁଷ୍ପ ପାତ୍ର
ସ୍ୱର୍ଣ୍ଣଝରୀ କରେ
ତୋ ପାଦ ନୂପୁର ଆଉ ବାଜୁନି ତ
ରୁଣୁ ଝୁଣୁ ସ୍ୱରେ ।
ଗବାକ୍ଷର ପାଶେ ହୋଇ ଛୁଡ଼ା
ପ୍ରଭାତ ମେଲଣି ପାଇଁ ଅଭିମାନିନୀ ରେ
ପାଉନୁ ତ ବ୍ରୀଡ଼ା ।

୪

ମୁଁ ତ ଆସିଥିଲି ସଖି, ରଖି ଅନୁରୋଧ
ସେତେବେଳେ ରାତି ଥିଲା ଘନ

ଲଂଘି କେତେ ଅପନ୍ତରା                କର୍ଦ୍ଦମାକ୍ତ ପାଠ
ଘାଟହୀନ ନଦୀ ଆଉ ଏ ପରିଖା ବନ,
ଅଶ୍ୱ ମୋର କ୍ଲାନ୍ତ ଅତି                ଖୁରା ବାନ୍ଧି
ରକ୍ତ ତାର ଝରେ
ମୁଖୁଁ ତାର ଫୁଟେ ଫେଣ                ନାସା ବାୟୁ
ବହଇ ପ୍ରଖରେ ।
ଅବଶ ଏ ଅଙ୍ଗଭାର                ତୋ ଗବାକ୍ଷ ପାଶେ
ରାତ୍ରି ଆସି ହେଲା ଗତ ଆୟୁ
କପରି ମୁଁ ଉଭା ରହେଁ ଆଉ !
ମୁଁ କି ଆଜ ଫେରିଯିବ                ସଙ୍ଗ ତୋର
ନପାଇ ରେ ଧନ,
ଲୁଂଠିତ ଚନ୍ଦ୍ରର ପାଇଁ                କାନ୍ଦେ ଶୁଣ ପ୍ରାନ୍ତର
ଲାଂଛିତା ଅବନୀ !

୫

ସୁପ୍ତ ତୋର ରାଜପୁରୀ     ସୁପ୍ତ ଶୁକ ସୁନା ପଂଜୁରୀରେ
ଶୁଭୁନି ତ ମୟୂରର କେକା
ଗୃହସ୍ଥଳୀ କଳରବ                ସ୍ତବ୍ଧ ସହସା ଯେ
କେହି ନାହିଁ ସୁପ୍ତ ତୁ କି ଏକା !
ନୀଳ ଶୈବାଳରେ ସିକ୍ତ                ତୋ ପୁରୀ ପ୍ରାଚୀର
ବନ୍ୟଲତା ସ୍ଥାନେ ସ୍ଥାନେ ଝୁଲେ
ଚତୁର୍ଦ୍ଦିଗେ ଭୋଜବାଜି     ଦେଲା କେ ବା ସହସା ଲଗାଇ
ମୁଁ କି କାହିଁ ଆସି ନାହିଁ ଭୁଲେ ?
କି ବା କେଉଁ ସ୍ୱପ୍ନ ଘନ ଘୋର
ଛଳନା ବାର ବାର ମୋତେ ଦେଇ ଯାଏ
ମୁଖଚ୍ଛାୟା ତୋର ?

୬

ସଖି ତୁ ଯେ ସମ୍ମୁଖେ ଶାୟିତା
ଏକ ବାହୁ ଶିରେ ଉପାଧାନ
ମୁକୁଳିତ ପାଟ ଶାଢ଼ୀ
ତନୁ ଗୃହ ପାଶେ
ଆଂକ ଅଛୁ କୁଟିଳ ଲେଖନ,
ଶଯ୍ୟାରେ ପଡ଼ିଛୁ ଲୋଟି   ଫିଟି ପଡ଼
କଟି କାଂଚ ଦାମ
ଫିଟି ଧଶେ ସୁବର୍ଣ୍ଣ ବନ୍ଧନୀ
ପରଶିତ ନୂପୁରରୁ   ଖସିଅଛୁ ତଳେ
ମରକତ ମଣି ।
ମୁଁ କପଟ
କରିପାରେଁ ଭୁଲ !
ଆଗୋ ମୋର ପରଶିତା   କେଉଁ ଯୋଗିନୀ କ
ଭଗ୍ନକଲ୍ ଯାହା ଅନୁକୂଳ ?

୭

ପ୍ରଭାତ କନକ ରଶ୍ମି ସ୍ପର୍ଶିଯାଏ   ଦୂରଗିରି ଚୂଡ଼ା
ଶୁଭ୍ରନତ ଆଳଷର ସ୍ୱନ
ରାଜଭ୍ରାତା ଆଳୟରୁ   ଶୁଭୁନାହିଁ ସ୍ନାନର ମାଜଣା
କାହିଁ ଜୟଗାଥା ନାହିଁ ତୋଳେ ବନ୍ଦୀଗଣ !
ପ୍ରାଚୀର ପ୍ରସ୍ତର ଫାଟୁ   ଲମ୍ବି ଆସେ କଳା ସାପ ଧୀରେ
ଉଡ଼ିଯାଏ ଗୃହର କପୋତ
ତୋହର ଗବାକ୍ଷେ ଦେଖେଁ   ଉର୍ଣ୍ଣନାଭ ବୁଣେ ସୂକ୍ଷ୍ମଜାଲ
ସାଙ୍ଗ ହୁଏ ବଜନ ପ୍ରଭାଷା ।
ମୁଁ ଯେ ଏଥେ ଆସିଥିଲି ପ୍ରିୟ,
ଫେରିଗଲି ରଖି ଦେଇ   ତୋ ପ୍ରଦତ୍ତ ସ୍ନେହର ସ୍ମାରକ
ମଣି ଅଙ୍ଗୁରୀୟ ।

# ନୀଳ ନିର୍ଜନ

ସୂର୍ଯ୍ୟଅସ୍ତ ଯାଏ
ନୀଳାର ବଳୟୁ ଶେଷେ ହାସ୍ୟ !

ଗୈରିକ କିନାରେ ଗଡ଼ଚଳ ଶାମୁକାର
ଧୌତ କରି ଫେରିଯାଏ କି ପ୍ରଗଲ୍ଭ ଉଲ୍ଲାସରେ ସାଗର ଜୁଆରେ
ହଜେ ସାମ୍ରାଜ୍ୟ ସମାଜ ଶ୍ରେଷ୍ଠୀ ଆଉ ସମ୍ରାଟର ଅଭଥ୍ ସଭ୍ୟତା
ପୋଛିଯାଏ ଶିଳାଲିପି ଇତି ହୁଏ ଭ୍ରଷ୍ଟ ଭାଷ୍ୟ ଐତିହାସିକତା
ମୂକ ଯବନିକା ଖସେ ଶଙ୍ଖ ସ୍ମାରକ ମିନାର ଧୀରେ ପଡ଼େ ଭାଙ୍ଗି
କେଉଁ ମୋହିନୀ ମାୟାର ମୁଗ୍ଧ ସ୍ପର୍ଶେ ଉଭା ରହ ମଗ୍ନଧ୍ୟାନ ଆଜ
ହେ କୋଣାର୍କ, ହେ ସ୍ୱପ୍ନ ସନ୍ନ୍ୟାସି,
ସୁବର୍ଣ୍ଣ ବାଲୁକା ତଟରେ କି ଜିଜ୍ଞାସି ମହାସିନ୍ଧୁ ପଶ୍ଚାତେ ଫେରଇ
ବ୍ୟର୍ଥ ଉତ୍ତର ପ୍ରତ୍ୟାଶି !

ଅଜ୍ଞାତ ଐଶ୍ୱର୍ଯ୍ୟ ହାଟ ହଠାତ୍ ଭାଙ୍ଗିଛି କେବେ ତୁମେତ ଜାଣିନା,
ଛିନ୍ନହେଲା ଆଶାବରି ବୀଣା !
ଚକାଡ଼ି ନଭାଇ ଧୂପ ପ୍ରସ୍ଥାନ କରିଛି କେବେ ଦେଉଳ ପୂଜାରି,
ଗଜପତି ପଟ୍ଟାପୂତ ମହାଦେଇ ଯେମାମଣି ମନ୍ତ୍ରୀ ଚଢ଼ିହାରି

ସ୍ଥୂଡ଼ ମଣିଚୂଡ଼ ହର୍ମ୍ୟ ଅସ୍ତ ତୋରଣର ପାରେ ରଚିଲେ ପ୍ରୟାଣ
ଯାଇ ନାହାନ୍ତି କି ଦେଇ ଅନ୍ତିମ ପ୍ରଣାମ
ହୃଦୟ ସୀମାନ୍ତ ମନ୍ଦି ସେମାନଙ୍କ ବ୍ୟଥା ଚିତ୍ତ ଅର୍ଘ୍ୟ ବିଦାୟର
ବାଜନ ଭୂମିର ମର୍ମେ ? କଂପିତ ଅନ୍ତର
ଆସି ନ କି ଟେନିବାପାଇଁ ମୁଖଶାଳା ପ୍ରାଙ୍ଗଣରେ ଅଂତିମ ମେଲାଣି
ଦଳେ ଦଳେ ଶିଳ୍ପୀକୁଳ ମରଣ ସନ୍ଧାନୀ
ତାଙ୍କ ଅଭିମାନ ଅଶ୍ରୁ ଅଭିଷେକେ ହୋଇନକି ବିକଂପିତ ପ୍ରାଣ
ନିର୍ବାକ ପାଷାଣ !

କହ କେଉଁ ତପସ୍ୟାର ପ୍ରାର୍ଥନା
ଶିଶୁ ବକ୍ଷ ପରେ ବସି କରୁଛ ଶତାବ୍ଦୀ ବ୍ୟାପି ଶବର ସାଧନା,
ଅନିମେଷେ ତୋଳି ଭଗ୍ନ ଶିର
ଅନାଇ ରହିଛ ଦୂର ଧୂମ୍ର ନୀଳ ତୀର
ଅନନ୍ତ ବାରିଧି ଭେଦି ନିତ୍ୟ ଜଳି ଉଠେ ଯହିଁ ନୂତନ ଭାସ୍କର
ସ୍ୱେଦ ଖିନ୍ନ କାୟା ତବ ଆଲୋକ କୁଙ୍କୁମେ କରି ଆରକ୍ତ ଭାସ୍ୱର
ଦୁଇ ଦଣ୍ଡର ସକାଶେ । ପ୍ରସ୍ତରର ସ୍ନାୟୁ ମଧ୍ୟେ ତୋଳି ଶିହରଣ
ଜାଇଁ ଉଠେ କେଉଁ ଉଗ୍ର ପ୍ରଗଲ୍‌ଭ ସପନ ।

କେତେ ପଥିକ ଶାସକ ସ୍ଥପତି ଓ କଳାଜୀବୀ
ମୌନକ୍ଳାନ୍ତ ବାଲୁକାର ବେହ୍ୱରଣ ତଳେ
କି ବିସ୍ମିତ ପ୍ରଶ୍ନ ଅବଚନେ
ପୁଚ୍ଛିଯାଏ ଥରେ ଥରେ ଆସି
ତୁମେ ରହ ନିରୁତ୍ତର
ହେ ସ୍ଥିର ସନ୍ୟାସି !
ଗୌରବର ଭଗ୍ନହାଟ ପୁନଶ୍ଚ ବସିବ କେବେ ତୋଳି କଳରବ
ହୃଦୟ ଶେଖର ଭେଦି ଶିଳ୍ପୀ ସଂଘ ଶୋଭାଯାତ୍ରା ତବ
ପଦମୂଳେ ଉଦ୍‌ଯାପିବେ ? ପୁନର୍ବାର ଶିଳ୍ପୀ ଶିଶୁ ମଣ୍ଡିବ ସଧୀରେ

ସ୍ୱର୍ଣ୍ଣ କଳସ ମୁକୁଟ ସ୍ୱେଦ କୃଷ୍ଣ ଶିରେ ?
ଚନ୍ଦ୍ରଭାଗା ସମାପନ ଉଷାର ଜୁଆର ସ୍ନାନ ଉଦସ୍ନ ଉମ୍ବର
ବିରହ ବିବର୍ଣ୍ଣ ଭାଲେ ଲେପିଦେବ ମମତାର ମସୃଣ ଅମ୍ବର
ତୃଷାତୁର ସସ୍ମିତ ଲପନ
ତୋଳି କେବେ ଆଙ୍କିଦେବ ସମ୍ମତି ଚୁମ୍ବନ ?
ସେଇ ଶୁଭ୍ର ପ୍ରଭାତ ଆଶା ରେ
ବସି ରହ ଉପାସି କି ବା ବିଚିତ୍ର ବ୍ୟଂଜନା ଦେଖି ଶତାବ୍ଦୀର ପାରେ ?

ପୁନଶ୍ଚ ଜଳିବ କି ନଗର ଅଳିନ୍ଦେ ଦୀପ ଗୌରବ ଉଜ୍ଜ୍ୱଳ
ଆରତି ଶଙ୍ଖରେ କରି ସାଗର ବୀଚି ବକ୍ଷସ୍ଥ ଚଂଚଳ ତରଳ;
ଦୂରବାହୀ ବୋଇତ ବିଶ୍ରାମି
ନାବିକ ସଂଘ କି ଦେବ ଶ୍ରଦ୍ଧାର ସଲାମି ?

ଅନାଗତ ଧ୍ୟାନ ଗରିମା ରେ
ଉତ୍ତର ପ୍ରାନ୍ତୀୟ ମୁହିଁ ପଲକେ ପାଶୋରେ
ଡ଼େଇଁବାକୁ ସ୍ୱପ୍ନର ପାଚେରି
ଡ଼େଇଁ ବାକୁ ସପ୍ନର ପାଚେରି,
ସେ କେଉଁ ନୀଳ ନିର୍ଜନ ଦୂରେ ଫେରି ଫେରି
ମାଟି ଓ ଆକାଶ ମଧ୍ୟେ ବିସ୍ମୟ ଜଣାଇ
ଭୁଲିଯାଏ ହେ ସମାଧି
ଦୁଇ ବିନ୍ଦୁ ଅଶ୍ରୁ ଜଳ ଢ଼ାଳି ଦେବା ପାଇଁ

# ଅପଦେବତାର ବନ୍ଦନା

୧

ଭଲ୍‌ଗାର ତଟେ ପାହାଡ଼ୀ ଗ୍ରାମର ପଥେ
ହେ ଅପଦେବତା
କଣାକ୍ କନ୍ୟା ପ୍ରେମିକ କରିବ ମତେ ।

ଆଲ୍‌ପସ୍ ଶୃଙ୍ଗ ତୁଷାରର ସ୍ରୋତ ଯେବେ
ବହିଯିବ ଦୂର ଉପତ୍ୟକାର ତଳେ
ରେ ଓ ଓଟ୍‌ସ୍‌ର କଆଶ ମାଳାରେ
ଗଳିତ ଜଳର ପ୍ରଣାଳୀ ରଚନା କରି
ଝର ପ୍ରସ୍ତର ଖଣ୍ଡ ଉପରେ ବସି
ପ୍ରେମିକାର ବେଣୀ ଯୁଗ୍ମ ରଖି ମୋ ଗଳେ
ଶୁଣିବି ତାହାର ପରଥମ ପ୍ରେମିକର
ଗିରି ଦ୍ରୋଣ ତଳେ ଝଡ଼ର ସ୍ୱନେ
ନିରୁଦ୍ଦେଶର ସକରୁଣ ଇତିହାସ,
ହେ ଅପଦେବତା, କଣାକ୍ କନ୍ୟା ପ୍ରେମିକ କରିବ ମୋତେ !

୨

ସ୍ବଗ ଫଳ ନେଇ ଶୃଙ୍ଗେ ଶୃଙ୍ଗେ ଭୃଣ ଭୂଖଣ୍ଡ ପାଇଁ
ପଶ୍ଚାତେ ଯିବ ନୂତନ ପ୍ରେମିକ ତାର
ପାଥେୟ୍ଟ ପାନ ପୃଷ୍ଠେ ଦୋଳାଇ ଦେଇ ।
ଶାନ୍ତ ଶରୀର ମେଲାଇ ତସ କେଉଁ
ବନସ୍ପତିର ସ୍ବପ୍ନେ
ଲୋଭମାୟ୍ଟ ହାତେ ପାଦେ ମୋ
ଦେବ ବାଡ଼ି
ସ୍ଵର ଓ ମାଂସ ଭୃଣ ଭୂଖଣ୍ଡ ପରେ ।
ସ୍ଵର ଶିକ୍ତ ତା ଓଷ୍ଠ କମଳେ ମୁହିଁ
ଚୁମ୍ବନ ମୁଦ୍ରା ଅଙ୍କନ କରି ଦେଇ
ଆଦମ୍ ଇଭ୍‌ର ଭ୍ରଷ୍ଟ ସ୍ୱର୍ଗ
ଆଣିବ ଏ ଧରା ତଳେ
ଅପଦେବତା ହେ
କଣାକ୍ କନ୍ୟା ପ୍ରେମିକ କରିବ
ମତେ ।

୩

ଗ୍ରୀମାନ୍ତ ପରେ ଶିର ଝରଣାର ଜଳେ
ସ୍ୱଳ୍ପ ପରିଚ୍ଛଦୁଁ ତନୁ ତାର
ଉପୁଚ ପଡ଼ିଲେ ପାଦରୁ ସ୍ୱରସମ
ଆକଂଠ ମୁହିଁ ପିଆସୀ କରିବ ପାନ
ଅଂଜୁଳା ଦୁଇ ଭରି ।
ନତମ୍ବିମାର ପୃଥୁଳ ଜଘନ ପରେ
ମଥା ରଖି ଯିବ ଭୁଲି ଜୀବନର
କରୁଣ ଯାତନା ଗ୍ଲାନି
ଅପଦେବତା ହେ, କଣାକ୍ କନ୍ୟା ପ୍ରେମିକ
କରିବ ମୋତେ ।

୪

ଜ୍ୟୋସ୍ନା ଆସିଲେ ଫଳ ଝୁଙ୍ଗୁଡ଼ା ଧରି
ପକ୍ୱ ଆପେଲ ବନେ
ଝୁମ୍ପାତଳେ ତାର ସାଥିରେ ଶୟନ ରଚି
କାନେ କାନେ ତାର ଶୁଣାଇବ ମୁହିଁ
ମାଇସ୍ଲାକ୍ ଭସିନ୍ ଗୀତ
କହିବ ଗୋ ମିତ
ଏଇ ଗୀତ ଯେବେ ଶୁଣି
ଆକୁଳ ଶିକ୍ରା ଗୋଟିଏ ପ୍ରାଣକୁ ଶୁଣି ।
ବୁକୁ ଫକଠେ ମଥାରଖି ପୁଣି ସେ ଗୀତର ପ୍ରତିଧ୍ୱନି
ଶୁଣୁଥିବ ରହି ରହି
ଅପଦେବତା ହେ କଣାକ୍ କନ୍ୟା ପ୍ରେମିକ
କରିବ ମୋତେ ।

୫

ତାହାପରେ କେଉଁ ତୁଷାର-ପାତର ରାତେ
ଗୋଠ ଛଡ଼ା ଛାଗ ଶିଶୁର ଅନ୍ୱେଷଣେ
ଯିବ ଦୂରେ ଦୂରେ
ଫାର୍ ଓ ପାଇନ୍ ବନେ ।
ଭଗ୍ନ ସେତୁରେ ପଦ ସ୍ଖଳିତ ବା ହୋଇ
ପାହାଡ଼ୀ ନଦୀର ତରଂଗେ ହେବ ଲୀନ ।
ପଦର ଚିହ୍ନ ମୋର ଅନୁସରି ପ୍ରାତେ
ସେ ଆସି ତୋଳିବ ସମାଧି ବା ନଦୀ ଖରେ
ମର୍ମରେ ଅବା
ଉତ୍କୀର୍ଣ୍ଣ ଦେବ କରି
ଜନମ ମୃତ୍ୟୁ ସାଲ୍;
ଅଥବା ସ୍କଚର କବିତାର ଏକ ପଦ !

ପୁନ ବସନ୍ତେ
ଡୃଷ୍ଣାସ୍ତୁ ପ୍ରେମିକ ସାଥେ
ସେ ଆସି ଥୋଇବ ଫୁଲ ତୋଡ଼ା ସମାଧିରେ
ଅବା ଦେବତାର ନୟନ ମାନରୁ
ବନ୍ଦ୍ୟ ମୋର ପାଇଁ
ଆତ୍ମାର ପାଇଁ
ସ୍ୱର୍ଗ ସୃଜନ କର !!
ଅପଦେବତା ହେ
କଣାକ୍ କନ୍ୟା ପ୍ରେମିକ କରବ ମୋତେ ।

# ପଥପ୍ରଶ୍ନ

ରାଜପଥ ଡ଼ାକେ ଦକ୍ଷିଣେ
ବାମେ ବନ ପଥ
କେଉଁ ପଥେ ଯିବୁ
କହରେ ତୁ ମୋର ମନୋରଥ !

ଉଭୟ ପଥ ପାଇଁ ପ୍ରାଣବଧୂ ଶୁଭ ସୁର ତୋଳେ
ପ୍ରତିଧ୍ୱନି ସମ କୀଚକ କୁଂଜେ ବେଣୁ ରୋଳେ,
କେଉଁ ପଥେ ଯିବ ?
ପଥ ସଙ୍କେତ ନାହିଁ ଜଣା
ସନ୍ଦେହ ପିଠେ ହୃଦବେଳା ତଟେ କଳା ଫଣା ।
କେଉଁ ପଥେ ଯିବ ଚିତ୍ତ ଅଥୟ ମନେ ଭୟ
ସନ୍ଧ୍ୟାର ଘାସହୀନ ନଭତଳେ ଅହରହ ।

ଏ ଯେ ରାଜପଥ ।
ସ୍ୱର୍ଣ୍ଣ ମୁକୁରେ ବାତାୟନେ
ହର୍ମ୍ୟ ଚିକୁରେ କବରୀ ରଚଇ ଆନମନେ
ବାସବଦତ୍ତା,
ପଥିକ ପ୍ରିୟ ତା ଯାଉଁ ଏକା
ଉପହାର ପାଏ ଫୁଲ ବୁକେ ପ୍ରିୟା ହାତ ଲେଖା ।

ମାୟାର କମଳେ ଭୃଙ୍ଗ ମୁଁ ତନ୍ଦ୍ରୀ ବନ୍ଧନ
ଯୁଗରେ ଯୁଗରେ ସୁଖ ପରଶିବେ କୋଟି ବାନ୍ଧବୀ,
ସଉଧ ଶୟନେ ଭୋଗିବ ଜୀବନ ମନୋମତ
ଏଇ ରାଜପଥ ବାନ୍ଧୁ ଗୃହ ମୋ'ର ମନୋରଥ ।

ଏଇ ବନ ପଥ,
ସନ୍ଧ୍ୟାର ଛାୟା କରି ସ୍ନେହ
ଗିରିପ୍ରାନ୍ତରେ ନଶିଥିମା ଆସେ ଖେଳ ହୋଇ,
ଚୁପି ଚୁପି କହେ ଝରଣା ପାଷାଣ ପ୍ରଣୟୀର
ଗାଲେ ଗାଲ ରଖି ପ୍ରୀତିର କବତା ଧୀର ଧୀର ।
ବେତସ କୁଂଜେ କପୋତ ଡ଼ାକଇ କପୋତୀ ରେ
ମିଥୁନ ରଙ୍ଗେ ଉଡ଼ି ଯିବାପାଇଁ ବନ ତୀରେ ।
ଏ ପଥେ ମୁଁ ଯିବି,
ଯହିଁ ପ୍ରଣୟର ପରମାପେ
ମଧୁ ଗୃହରେ ମଧୁ ଚଖାଇ ଦିଅଇ ଫୁଲ ଆପେ ।

ଡ଼ାକେ ରାଜପଥେ ଶୁଣ ସୁନନ୍ଦା ରାଜନଟୀ
ମଂଜୀର ନତ ଚରଣ ମେଖଳା ଲୁଚ କଟୀ
ବହ୍ନିବରଣ ଆଭରଣ ଆଖି ଝଲସାଏ,
ପତଂଗ ମୁଁ ଯେ ଚଳଲ ଅଗ୍ନି ଅବଗାହେ ।
ଅଇଶ୍ୱର୍ଯ୍ୟର ବିଳାସକାମୀ ମୁଁ ।
ନାଗରକେ

ନାଗରକା ଏଥେ ଫୁଲ ବିକେ ଆଉ ରୂପ ବିକେ ।
ରୂପ ଭିକାରୀ ମୁଁ, 'ମରିବ ହଜାର ମରଣରେ
ନୂପୁରର ସମ ବାଜିବ ଚରଣ ଚରଣରେ ।'

ବନପ୍ରାନ୍ତରେ ଘନକାନ୍ତାରେ ଭୁଲ ପଥ
ଉପତ୍ୟକାର କୁଟୀରେ କା'ର ମୁଁ ଉପଗତ !

ବିଦାୟ ଲଗନେ ଆସୁଚି ନୟନୁ ଢ଼ାଳି ବାରି
କହିଥିଲି କିଏ, ଭରିବନି ଆଉ ଦନା ଗୃହ ?
ବନ ଦ୍ରୋଣ ତଳେ ଛୁଡ଼ା ହୋଇ
ମୋର ପଥ ଗୃହେଁ;
ଫେରିଯିବା ଲାଗି ମନ କୁରଙ୍ଗ
ତହିଁ ଧାଏଁ ।
ମେଘ ଡ଼ମ୍ବରୁ କେଶେ ମଦାଙ୍ଗ ଫୁଲ ଥିଲା
ଫେରିଯିବ, ମତେ ଡ଼ାକନ୍ଦଏ ଶୂଣ
ବନଲୀଳା ।

ଚରଣ ଚଢ଼େ ଦଳି ବଢ଼ୁବାର ରାଜପଥ
ବାହିନେବି ଆଜି ଜନ-ଯୁଦ୍ଧର ଜୟରଥ ।
ବିବାହ ଶଙ୍ଖ ବନ୍ଧୁ ହେ ଆଜି ଗାଢ଼େ ତୋଳ
ପୂରୁ ତୋ କଣ୍ଠେ ଅଭିନନ୍ଦନ କଲରୋଳ ।
ଜାଳିବି ଅଗ୍ନି ଜୀବନ ବେଦୀରେ ହୋମ ହେତୁ
ମୁଁ ନୁହେଁ କମଳ ଲଳସୀ ଗୀର ମୁଁ ଧୂମକେତୁ ।
ସୃଷ୍ଟି ବିନାଶୀ ଦେଖ ମୋ ହାତରେ ତଳବାର
ମୁଁ ଯେ ସେନାପତି
ଜାଗ ହେ ଜନର ଦରବାର !

ଚନ୍ଦ୍ର ଉଠୁଚି ସମାରୋହେ ବନ ପୃଥିବୀ ରେ
ଚକୋର ମୁଁ ଆଜି ଜ୍ୟୋସ୍ନା ଜୁଆରେ ମଶିବି ରେ
ଲତିକା କୁଂଜ କାମିନୀ ଶୟନେ ସୁରଭିତ
ବିଧୁରା ଯାମିନୀ ସାକ୍ଷୀ ! ମୁଁ ନୁହେଁ ବିପରୀତ ।
କି ଲଭି ରଣର ରଚନା କି ଲଭି ବିନାଶ ବା
ପଳାତକ ମୁଁ ଯେ ଜୟଦ୍ରଥ ହେ ଜନସଭା !
ବନାଭୃଙ୍ଗ ମୁଁ ଯେ ଗୁଞ୍ଜରିଅ ବନେ ହଜଯାଏଁ
ବର୍ଣ୍ଣ ବିଭବେ କୁସୁମ ମାଳିକା ସ୍ରଜ ଯାଏଁ !

କେଉଁ ପଥେ ଯିବ ? ପଥର ପ୍ରଶ୍ନ ବାର ବାର
ବିମୂଢ଼ ଚିତ୍ତ କରଇ ଥକିତ ଅନୁଦାର !
ପରିଚିତ ଜନ ଦଳ ବେନପଥେ ଚାଲିଯାଏ
ପରିଚିତ ସୁରେ କଣ୍ଠ ଉଚ୍ଛଳି ଗାନ ଗାଏ,
ମିଳଇ ଚିତ୍ତେ ଆନନ୍ଦ ପୁଣି ଅବସାଦ
ହାତପାନ୍ତି କାରେ ମାଗିବ କି ଅବା ପରସାଦ !
ରାଜପଥ ଡ଼ାକେ ଦକ୍ଷିଣେ
ବାମେ ବନ ପଥ
କେଉଁ ପଥେ ତୁରେ ଚାଲିବୁ
କହ ମୋ ମନୋରଥ !

# ଇନ୍ଦ୍ରମେଘ

ମେଘରଙ୍ଗେ ନନ୍ଦିତା ଏ ଧୂସର ନଗରୀ
କ୍ଳାନ୍ତ ଆଜ ଗ୍ରୀଷ୍ମର ବିଳାସେ ।
ଆକାଶେ ଆକାଶେ ତାର ଆଜ ଗ୍ରୀଷ୍ମ ମେଘ
କଜ୍ଜଳିତ ଗ୍ରୀଷ୍ମ ତାର ରାଜ ପଥେ ପଥେ

ଶତାବ୍ଦୀର ବହୁପୂର୍ବ ନଗରୀର ପୂର୍ବର ତୋରଣେ
ଲକ୍ଷ ପଦାତିକ ସେନା ବର୍ଚ୍ଛାର ଫଳକେ
ନଚାଇ ବିଦ୍ୟୁତ
ଦୁର୍ଗଶିରେ ଆସିଥିଲା ମେଘ !
ସେ କେଉଁ ସମ୍ରାଟ କନ୍ୟା ଉଦ୍ଭ୍ରାନ୍ତ ହୋଇ
ହଂସ ହର୍ମ୍ୟ ଶିଖେ
ମୁକୁଳାଇ ଦେଇଥିଲା ଗଜମୋତି ଝରା
ମେଘବର୍ଣ୍ଣ କେଶ ଘନ !
-ଦିଗନ୍ତେ ହଂସ ବଳାକା-ଆକାଶରେ ଶ୍ୟାମ ନଷ୍ଟ ମେଘ
-ରାଜ ଉପବନେ ଧାପ-ପରିଖାର ସ୍ରୋତ ବେଗବତୀ
-କେବେ କେଉଁ ବନ୍ଦୀ ଯୁବରାଜ
ଭୁଲି ବନ୍ଧ ହସ୍ତର ଶୃଙ୍ଖଳ

କହିଥିଲି ଉଚ୍ଛୃଙ୍ଖଳେ :
ସେ କେଶର ବନ୍ୟା କବା ବର୍ଷାର ଯମୁନା
ଆଉ ସେ ଯମୁନା କବା ଶ୍ରାବଣ ନର୍ତ୍ତକୀ !
ସମ୍ରାଟ ନନ୍ଦିନୀ ଆଜ ବରଦ୍ଧ ବଷ୍ଟ କ
ନୟନ କଜ୍ଜଳ ତାର ଦେଇଅଛୁ ଲେପି
ନଗରୀ ଆକାଶେ ?

ସେ ଆକାଶ ଏଇ ନଗରୀର
ଅଦମିତ ବେଦନାରେ ବନ୍ଧୁ
କାନ୍ଦଇ କ ବନ୍ଧୁବଧ !
ପୁରେ ପୁରେ ଅସୂତ ନଟୀରେ
ଚରଣେ କ ବାଜଉଠେ ତାହାର ସେ ଦରଦୀ ନୂପୁର !!
ତୁମେ କ ସେ ସମ୍ରାଟ ନନ୍ଦିନୀ,
ଅସୀମ କାନ୍ତାର ପାରେ ନଗରୀର କେଉଁ ବାତାୟନେ
ଆଜ ବ ଆକାଶେ ଗୃହିଁ !!
ଦୂରେ ଉଠେ ଦରବାରୀ କାନାଡ଼ାରେ ସୁର
ମୋହର ହୃଦୟ ସେ ଯେ ବାଜ ଉଠେ
ତହିଁ ରୁଦ୍ଧ ଯନ୍ତ୍ରଣା ଅଗାଧ ।

ଆଜ ତୁମେ ଚନ୍ଦ୍ରଶାଳା ପୁରେ
ନର୍ତ୍ତକ ମୟୂର ଗୃହିଁ ତୁମ କେଶ ମେଘ
ଛୁଟାଏ ନ କେକା,
ତୁମେ କ ସାରଙ୍ଗୀ ତା'ରେ
ତୋଳ ମେଘନାଦ !
ଗୁପ୍ତା ଗୁପ୍ତା ତନ୍ଦ୍ରା ନଇଁ ଆସେ ଚକ୍ଷେ ତୁମ
ଶତାବ୍ଦୀର ସ୍ମୃତି ବଜଡ଼ିତ
ଘନ ଘଟା ଘୋର
ସନ୍ଧ୍ୟାର ଅଂଚଳ ଘେରି ତୁମ ଅନ୍ତପୁରେ

ସହସା ଚମକ ଦେଖ ତଡ଼ିତ ଚକିତେ
ବନ୍ଦୀ ଯୁବରାଜ ଉଷ୍ଣ !!
—ବଜ୍ରର ଆଘାତେ ଦୂରେ ଭୂମିପରେ
ଲୋଟିପଡ଼େ ବୃଦ୍ଧ ବନସ୍ପତି—
ତୁମେ କି ଲବାଣ୍ୟ ବକ୍ଷ
ଦେହେ ମାଥେ ମୁକ୍ତକର ଗନ୍ଧ
ରକ୍ତର କରବୀ ଫିଙ୍ଗି ଦେଇ ଭୂମିତଳେ
କରଜରେ କାଠ ଭିନଗାର !!!

ଆଜ ଏ ଝଡ଼ର ମେଘେ ବିବର୍ଣ୍ଣ ଅନ୍ଧାରେ
ମୁକୁଳାଇ ହୃଦୟ ମନ୍ଦିର
ନଗରୀର ଅଦ୍ଭୁତ ଏ ରାଜପଥ ବାହି
ମୁଁ ଖୋଜେ ତୁମରେ-ମୁଁ ଯେ ଚନ୍ଦ୍ରଭାନୁ-,
ତୁମେ
କାହିଁ ? କହ କାହିଁ ?
ନୀଳ ଗମ୍ବୁଜ ଶିଖରେ ତୁମେ ଚନ୍ଦ୍ରଲତା
ଆଜ କି ଲୁଣ୍ଠିତା ଇନ୍ଦ୍ରମେଘ ଶିଳା ତଳେ !
ଆଜ କି ଅପୂର୍ବ ନୀଳ ତମିସ୍ର ମେଘର
ଲୁଚେ ତୁମ କେଶର ଗନ୍ଧରେ
ମୋତିର ଗଜରା ତହିଁ ବଳାକାର ରେଖା !

ମୁଁ କି ଆଜ ମେଘ ହେବ ଅଭ୍ରକଳା ମେଘ
ଐଶ୍ୱର୍ଯ୍ୟ ବିଳାସିନୀ ଏ ନଗରୀର
ବକ୍ଷ ହର୍ମ୍ୟ ଶିଖେ
ମୁହିଁ କି କାନ୍ଦିବି ବସି,
ତୁମ ଅଶ୍ରୁନୀର ଧାରେ ହିଶି [illegible]ମତାଳ
ମୁଞ୍ଚିବ କି କଜ୍ଜଳାଭ ନୀର !

ନିଃଶେଷେ କର ଆପଣାରେ
ତୁମ ବାତାୟନ ତଳେ ବର୍ଷିଯିବ
ବେଦନାର ଆର୍ଦ୍ର ଅଶ୍ରୁ ସମ !

ତେବେ ମୁହିଁ ମେଘ ହେବି ଆଜ ଇନ୍ଦ୍ରମେଘ
ନଗଣ୍ୟର ବନ୍ଧୁବଧ
ଆବିଳତା ନେଇ
ମୁହିଁ ଆଜ ବର୍ଷିଯିବ
କଙ୍କଳତ ଯନ୍ତ୍ରା ଝେଙ୍ଗ ରାଜ ପଥେ ପଥେ,
ଆକାଶେ ଆକାଶେ ହେବ
ଆଜ ଇନ୍ଦ୍ରମେଘ ।

## କୌଣସି ବାନ୍ଧବୀର ଜନ୍ମଦିନେ

ହୋମାଗ୍ନିର ପରିବେଶ—
ତିଳ ଓ କାଞ୍ଚନ
କର୍ପୂର ଚନ୍ଦନ
ଆଜି ଶଙ୍ଖ ମନ୍ଦସ୍ୱର—,
ସକାଳର ଶିହ୍ନ ।
ରୁଦ୍ରାକ୍ଷ ମାଳାର ସମ
ଘୂରି ଘୂରି ସମାପିତ
ତୁମ ଜନ୍ମଦିନ ।

ଅନେକ ଫସଲ କ୍ଷେତେ ଅନେକ ସୁବର୍ଣ୍ଣ,
ସକାଳ ମେଘ ପାଗୋଡ଼ା ରୌଦ୍ର ସପ୍ତବର୍ଣ୍ଣ
ମାଣିକ ପ୍ରଦୀପ ଥୁଏ ସପ୍ତପର୍ଣ୍ଣୀ ପର୍ଣ୍ଣେ;
ନୂତନ ସକାଳ ଆସେ
ଗନ୍ଧ ଗାନେ ବର୍ଣ୍ଣେ
ଆଲୋକ ଲହଡ଼ି ଛୁଟେ ଉତ୍ତରେ ଦକ୍ଷିଣେ
ତୁମ ଜନ୍ମ ଦିନେ ।

ତଥାପି ତ ଅନ୍ୟ ଲୋଡ଼ା
ଲୋଡ଼ା ରୂପ ଯଶ ସ୍ୱାସ୍ଥ୍ୟ, ନୂତନ ପ୍ରେମର
କଣ୍ଠେ ଓ କଲମେ ଲୋଡ଼ା ନୂତନ ଭାଷାର ଲିପି
ବଳିଷ୍ଠ ମୁଖର !

ଅନେକ କ୍ଷତର ମଧ୍ୟେ କେବଳ ଆହ୍ନିକ ଗତି
ଆଣିଛୁ ଅକ୍ଷାଂଶ ବୃତ୍ତେ
ତୁମ ଜନ୍ମଦିନ
ବର୍ଷର ବର୍ଷର ଗାଥା କାଳରଥ ଚକ୍ର ଚିହ୍ନେ
ହୋଇଛୁ ବିଲୀନ ।

ତେଣୁ ଆଣି ନାହିଁ ଆଜ ଫୁଲ ବା ଚନ୍ଦନ
ଉଚ୍ଛଳିତ ହାସ୍ୟ ବା ବିଶ୍ୱାସେ
ଆକାଶର ମାଳେ ଦେଖ ଏବେ ବି ଚନ୍ଦନ ଧୂଳି
କଳା ହୋଇ ଆସେ ।
ଭଣ୍ଡାର କୋଣରୁ ଦେଖ କୃଷ୍ଣମେଘ ଆଙ୍କଇ
ଆକାଶେ
କେଉଁ କୃଷ୍ଣା ଶ୍ୟାମ ତନୁ ଆବରେ କି
ମାଳ ପଠେବାସେ !
ତେଣୁ ଆଣି ନାହିଁ ଆଜ
ଅକ୍ଷର ମାଳାର ଗୀତି
କଣ୍ଠ ଭରି ସ୍ତୁତି,
କ୍ଷମାକର ଚ୍ୟୁତି ।

ସକାଳ ସୁବର୍ଣ୍ଣ ହଜେ
ଦ୍ୱିପ୍ରହର ରୌଦ୍ରମୟୀ
କାଂଚନ୍ତ ମେଘେ
ଆକାଶ ମଳିନ,
କ୍ରମଶଃ ସ୍ତିମିତ ହୁଏ
ଅସ୍ତମିତ ହୁଏ
ତୁମ ଜନ୍ମଦିନ ।

## ଝଡ଼ର ପକ୍ଷୀ

One night, when the wind was high,
a little bird few in to my room.

—First Book—

୧

ଏକଦା ରାତ୍ରିରେ
ବିଦ୍ୟୁତର ନୃତ୍ୟ ସାଥେ ମେଘେ ମେଘେ
ସୁପ୍ତ ଧରଣୀରେ
ଶୁଭୁଥିଲା ଝଡ଼ର ଧ୍ରୁପଦ······
ଚତୁର୍ଦ୍ଦିଗେ ଜଳୀୟ ଅନ୍ଧାର
ରଚିଥିଲା ଏକ କୃଷ୍ଣ ହ୍ରଦ ।
ଭବନେ ମୋ କ୍ଷୀଣ ଦୀପ ମାୟା
ଗହନ ତମସା ଖରେ ରଚିଥିଲା ବିଭୀଷିକା ଛାୟା ।
ସେତେବେଳେ ଛୋଟ ଏକ ପକ୍ଷୀ
ଝଡ଼ର ଶ୍ୱାସର ଭାର ପକ୍ଷପୁଟେ ନେଇ
ଆସିଥିଲା ଉଡ଼ି ମୋ ଭବନେ
ରାତ୍ରିର ଆବର୍ତ୍ତ ରଖି ଦୁଇ ଆଖିରୁ ନୟନେ ନୟନେ ।

୨

ଯେପରି ଏକ ପକ୍ଷୀ
ଶାଖା ଆଶେ, ନୀଡ଼ ଆଶେ, ପ୍ରଣୟୀର ଆଶେ
ଅବା କେଉଁ ବେଣୁ କୁଂଜ ଲକ୍ଷ୍ୟେ
ଫେରୁଥିଲା ମଳୟ ବନାନ୍ତେ
କେଉଁ ଝରଣାର ତଟେ ଶସ୍ୟର କେଦାରେ
ଅବା କେଉଁ ଲୋକାଳୟ ପ୍ରାନ୍ତେ
ଶୁଣିଥିଲା ଝଡ଼ର ବାଂଶୀ
ଭେଟିଥିଲା ଦୃପ୍ତ ବାୟୁ ସେନା,
ପରାସ୍ତ ହୋଇଛି ତେଣୁ ବିକଳ ହୋଇଛି
ଯେପରି ଦୁଇ ଡେଣା !

୩

ଏକଦା ଝଡ଼ର ରାତେ ସଖି,
ସିକ୍ତ ଗୁଣ୍ଠନର ତଳେ ସଜଳ ବେଣୀରେ
ସ୍ୱର୍ଣ୍ଣ ପୁଷ୍ପ ରଖି
ଆସିଥିଲ ଏ ମୋର ଭବନେ
ଘୃଣଧାରେ ବୃଷ୍ଟିପାତ ଅଜସ୍ର ଧାରାରେ
ଝରୁଥିଲା ବାହାର ଭୁବନେ
ଗଗନେ ମେଦୁର ମେଘ
ଶାଖେ ଶାଖେ ବାୟୁର ଝଙ୍କାର
କହିଁ କହିଁ କାନ୍ଦୁଥିଲା ଘନ ଅନ୍ଧକାର ।
ସେତେବେଳେ ଶ୍ରାନ୍ତ ପକ୍ଷୀ ସମ
ଆସିଥିଲ ଏକାକିନୀ ଓଗୋ ପ୍ରିୟତମ !
ନୀଳାମ୍ବରୀ ତନୁ ତନୁ
ଝରେ ଜଳକଣା
ଲେଖିଥିଲା ପଦଚିହ୍ନ ଅଳତାର
ମଣ୍ଡାଇ ଅଗଣା

ଆରାଧ୍ୟା ଦେବୀରେ
ଯହିଁ ଦେଉଳରେ ଦେଖଇ ପ୍ରକାଶ
ପୂଜାରୀ ପାଲଟେ ମୂଢ଼ ଯଥା କଣ୍ଠେ ହୁଏ ଶିଳାନ୍ୟାସ
ତେସନ ଚକିତ ହେଲି ।
ନଭଗର୍ଭ ପ୍ରଗାଢ ପବନେ
ବିଶ୍ୱ କି ହୋଇଲା ଜଡ଼ ତମିର ଉତ୍ସବେ !·········
ନଶାନ୍ତ ଗଗନେ
ବିସ୍ମରଣୁ ଉଠି ଯେବେ ଦେଖିଥିଲି
ଚନ୍ଦ୍ର ଗ୍ରୁପ୍ତା ଉଦୟୁ ଆନୁର
ତୁମେ ନାହିଁ !
ତୁମ ପଦ ଚିହ୍ନ ରାଗେ
ଭୁବନ ମୋ ବିମୁଗଧ ବଧୂର ।

୪

ପ୍ରଭାତେ ଦେଖିଲି ଶ୍ରେଷ୍ଠ ପକ୍ଷୀ
ଚରଣ ଚିହ୍ନଟି ତାର ଶଯ୍ୟାଶିରେ ରଖି
ଫେରିଅଛି ଅରଣ୍ୟର ଶିରେ
ତା ଲଗି ହୁଏ ତ ଆଜ ଆୟୋଜନ
ପ୍ରୀତି ଉତ୍ସବର
ଶୂଲଥିବ ମାଡ଼େ !

ଶାଖେ ଶାଖେ ଲାଲ ନୀଳ ପୀତ ଫୁଲ
ଶିରେ ଶ୍ୟାମ ପତ୍ରର ଶୃଙ୍ଖଳୀ
ପ୍ରିୟଜନ କଣ୍ଠ ଭରି ଛୁଟିଥିବ
କଳ କଳ କୂଜନ ରାଗିଣୀ,
ଆହା, ପକ୍ଷୀ ଭୁଲିଥିବ
ତାର ପାଦ ପାଖୁଡ଼ାର ଛବି
କାହିଁ କେଉଁ କାହା ମନେ
ତୋଳୁ ଅଛି ସ୍ୱେରର ପୂରବୀ !

ମନେ କି ପଡ଼ିବ ତାର ଆଜ, ଏକ ଝଡ଼ର ନିଶିଥେ
ଏକଦା ତା ଅଭିସାର ଆନକକ୍ଷେ
ଛନ ଛନ ଗୋପନ ଚକିତେ
ଗଣ୍ଡାର ବର୍ଷଣ ଧାରା ଧରଣୀରେ
ନଭ ଭେଦୀ ଗହନ ଅନ୍ଧାର,
ମୁହାଁ ମୁହିଁ ଦୁଇଜଣ
ବାଢ଼ି ଦୁଇ ହୃଦ ଦୁଃଖ ଭାର
ନୀରବ ଗୁଞ୍ଜନ ତପ୍ତ ଲୋତକ ମୁଞ୍ଚନ;
ଛନ ଛନ ଅନ୍ତରରେ ତନୁ ତନୁ ମଧ୍ୟେ ଆଲିଙ୍ଗନ
ଆଜ ତା'ର
ମନେ ପଡ଼ିବ କି,
ଅଥବା ଅନ୍ୟର ନୀଡ଼େ ଅନ୍ୟ ପକ୍ଷ ତଳେ
ଭୁଲିଗଲା ସବୁ
ସେ ଝଡ଼ର ପକ୍ଷୀ ?

## ନୀଳନଦୀ

୧

ମିଶର ତୋ ଲାଗି ଶସ୍ୟ ସପନ ଦେଖେ
ମାର ବେଣୀଗୁମ୍ଫା ଗ୍ଲେଶକରେ ମରୀଚିକା
ନୀଳନଦୀ, ତଳେ ଚନ୍ଦ୍ରର ଝିଅ କନ୍ଥ
ମିଶିର ବାଳକା ଭାଲେ ନାଏ ଧୂଳ ଟୀକା ।

ବେନାମୀ ବିହଗ ବନ ସଙ୍ଗୀତ ଗାଏ
ସୁଅ ଧାର ତୋର ସ୍ୱଚ୍ଛ ସଫେଦ କାଚ,
ଠାବେ ଠାବେ ଗଛ ବୋଧଇ ପୋହ୍ଲାଶାଖା
ଢେଉର ପାହାଚ କାଟେ ଯହ୍ନିଁ ସୁନାମାଛ ।

୨

ଦୂର ପିରାମିଡ଼ କବର ତିମିର ଜାଲେ
ରାଜ ଦୁଲାରୀର ଗହନ ପହଡ଼ ଭାଜେ,
ଆଜବ୍ୱ ସେ ଆସେ କାଇଁଚ ରଜନର ଧାରେ
ତୋ ଘାଟ ସ୍ଫଟିକ ପାହାଚେ ତା ପଦ ମାଜେ ।

ତା ରୂପ ଛଟାରେ ଚକିତ ନୟନେ ଗୃହେଁ
ପଠାର ପଥର ଫାଟୁଁ ଅଜଗର ସାପ,
ସେ ଘାଟରୁ ବୁଡ଼ ଏ ଘାଟ ପହଁର ଆସେ
ତା ପାଦ ପାହୁଡ଼ ମଣି ଠନ୍ତେ ପାଣି କାକ !

କେଉଁ ଯୁଗତଳେ ମିଶରର ରାଜାବାଳା
ଯାଯାବର ଏକେ ପ୍ରାଣ ସଁପିଥିଲା ବୋଲି,
ଚନ୍ଦନ କାଠ ଫାଟକରେ ରାଜାଦେଶେ
ତା ଶିର ଶୋଣିତେ ପଥ ଧୂଳି ହେଲା ଗୋଳି ।

ସ୍ନାହାନର ଛଳେ ମାଳ ଚେଲୀ ଭରି ଦେହେ
ଗଜମୋତି ଭରି କଜଳ କବରୀ ଦେଶେ
ମୟୂର ପଙ୍ଖୀ ଚୋରଣୀ ମେଲି ତୋ ଜଳେ
ପ୍ରାଣ ଦେଲା ବାଳା ବସରଜ ଅବଶେଷେ

ନଟ୍ୟ ତୋ ତୀରେ ହୁଏ ଆଜ ଅଭିନୀତ
ସେ ଗୀତି ନାଟ୍ୟ ଅସ୍ତଜୋଛନା ତଳେ
ଖଣ୍ଡିତ ଶିର ଯାଯାବର ଫେରିଆସେ
ଆସେ ରାଜଜେମା ରାତି ସ୍ନାହାନ ଛଳେ ।

ସେ ମିଳନ ଦେଖେ ତାରହାର ନଭତଳେ
ତୀର ଶାଖାଶୟୀ ଚକିତ ସାରସ ଦଳ
ନିରଜନ ଗୀତି ରାଜାର ଦୁଲାରୀ ଗାଏ
ତୀରର ତମିର କରୁଣ କରୁଣତର ।

ସେ ଅଶ୍ରୁ ଗୀତେ ବନ୍ଦ କରୁଣ ଦ୍ୱାର
ପ୍ରଦୀପ ନିଭାଏ ତୀର ବନେ କାଠୁରିଆ
ଉଷ୍ଟ୍ର ବଣିକଦଳ ଢାଏ କାନେ ହାତ
ରାତିର ମରୁପଥରେ ହୋଇଣ ଠିଆ ।

୩

ବଣ ହଳଦୀର ଗଂନ୍ଧ ଭୂମିରେ ଭାସେ
ଶିମୂଳୀ ଶାଖାରେ ବାହୁନେ ଶିଆଳୀ ଲତା

ସିକତା କୁଦରେ ହାଇମାରେ ଚିତାବାଘ
ବାଲି ହରିଣୀର ଗ୍ରୀବରେ ଜଳାଇ ବ୍ୟଥା ।
ନରଖାଦକର ଭୋଜର ମାଦଳ ଶବ୍ଦେ,
ଜୁଲୁ ଯୁବତୀର ନରମୀ ବାହୁର ଡୋର
କ୍ଲାନ୍ତ ପ୍ରଣୟୀ ଗଳୁଁ ମୁକୁଳାଇ ଦିଏ ।
ଲଜ ପାଟଳତ ବଦନେ ଧୁଏ ନଶି ଭୋର ॥

୪

କାହିଁ ଗିରିଦରୀ ସାପ ସଂକୁଳ ହ୍ରଦ,
କାହିଁ ମରୁ ନଠ,
ସାଗର ସଫେନ ହୁଆ !
କାହିଁ ରାକ୍ଷସୀ ଉନ୍ମଦାଶ୍ରୁରେ ନଦୀ
କାହିଁ ଚର ନଟୀ କାହିଁ ତୁ ସରମୀ ପ୍ରିୟା !

୫

ପ୍ରାଣ ପିଆଲାରୁ ନୀଳକଂଠ ମୁଁ ଆଜ
ନିଃଶେଷ କରି ବିଷ କରିଅଛି ପାନ,
ତୁ ବନଚାରିଣୀ ଖଞ୍ଜନୀ···ମୁଁ ଖଞ୍ଜ
କଂଠେ ମୋ କାହିଁ ତୋର ଅନୁରୂପ ଗାନ !
ତଥାପି ତୋ ଝର ଶସ୍ୟ ସପନ ଦେଖେଁ
ତୋର ନୀର ବେଣୀ ଶମେ ଶଂକିତ ତୃଷା
ଏ ମୋର ଭୂମିର ପଥିକ ମୁଁ ମରୁବୃକ୍ଷ
ମରମୀ ଯୋଷାରେ ତୁ ମୋ ମରୁଦ୍ୱୀପ ଭୂଷା ।

# ଅନୁରାଧାର ଅଭିସାର

## ଅଂଭିରୁଚ

ତୁଂଗଭଦ୍ରା ନଦୀ କୂଳେ
ଗୁମ୍ଫା ତଳେ
ଚଂଗ ଶିଉଳିର
ତୁମେ ଥିଲ ଉଷା
ମୁକେ ତବ ଅବନ୍ତୀର ଗୃରୁଚନ୍ଦ
କେଶେ କେଶେ ତମିସ୍ରାର
ନିରୁକ୍ତ ମାଳମ,
ବିଦ୍ୟୁତ ରଙ୍ଗର ପାଠ
ତନୁ ତଟେ ଥିଲ;
ନୟନ ଷମିରେ ମୋର
ତୁମ ମୁଖ ମଣି ଦୀପ ସଖି
ଜାଳିରଖି
ମୁଁ ଦେଖିଲି ଜନ୍ମାନ୍ତର ଲୀଳା ।

## ଲୀଳା

ଗାନ୍ଧର୍ବୀ ଆଗୋ
ତୁମ ମନ୍ଥର ନୃତ୍ୟ
ସୁର ସଜ୍ଞ ତଳେ ନିତ୍ୟ
ମୋର ଝନ ଝନ ଝନ ଝାଞ୍ଜର ତାଳେ
ମନ୍ଥନ କଲା ଚିତ୍ତ ।
ତୁମ ଗୃହ୍ମ ଚରଣର
ମଞ୍ଜିର ମୃଦୁ ଛନ୍ଦ
ତୁମ ଭ୍ରୂଧନୁର ଛଟା
ବଙ୍କିମ କଣ୍ଠୀ ବନ୍ଧ
ଶୋଣିତରେ କଲା କ୍ଷିପ୍ତ ।
ତୁମ ନୃତ୍ୟର ତାଳେ
ମେଘରେ ନାଚିଲା ଚପଳା
ସାଗର ଦୋଳାରେ
ସୈରନ୍ଧ୍ରୀ ହେଲା ସଚଳା
ଶସ୍ୟେ ଶସ୍ୟେ
ଲଗିଲା ଆଶିଷ ସ୍ୱର୍ଣ୍ଣ
କୁସୁମେ କୁସୁମେ
ଇନ୍ଦ୍ରଧନୁର ବର୍ଣ୍ଣ
ବିଶ୍ୱ ନୟନ—
ବନ୍ଦ ହୋଇଲା ଅଚଳା
ତୁମ ନୃତ୍ୟ ପୁଲକେ ଚପଳା ।

## ଗୀତ

ତୁମ ନୟନର କଳା ବିନ୍ଦୁ ଦହନେ
ମୋର ମୂରଛନା ସଖି ଆହା ହଜିଲା

ତୁମ ଚରଣ ନୂପୁର ପୁଣି କପାଇଁ
ବେସୁରା ରାଗିଣୀ ରେ ଯେ ବାଜଲା !
ତୁମ ସରମ ଜଡ଼ ନୟନେ ଲୁହିଁଲ
ଆହା ଲଜ୍ଜିତ କଜ୍ଜଳ ଲତା କ
ତୁମ ତନୁର ତନମା କେଉଁ ଅଜଣା
କବିର ରଚିତ ଗୀତ କଥା କ !

ବେପଥୁର ସ୍ୱେଦ ତୁମ ଲଲାଟେ
ଗୋରଚନା ଚନ୍ଦନ ନଷ୍ଟଏ
ଉଠେ ପଡ଼େ ଅଙ୍ଗଦ ଅଙ୍ଗେ
ଛନ୍ଦ ବିହୀନ ପଦ ପରାଏ,
ମୋ ନୟନେ ତୁମେ ସଖି ଅନାଇ
ସୁରସଭା ବେଷ କପାଁ ବଳିଲ
ନିବେଦିତ ପୂଜାଫୁଲ ସମ ଗୋ
ସହସା ମୋ ପଦେ କପାଁ ଝରିଲ !

## ସଙ୍କେତ

ଅନୁରାଧା,

କହିଥିଲ ତୁମେ, "ହେ ଗନ୍ଧର୍ବ, ତୁମ ମୂର୍ଚ୍ଛନାରେ
ମୁଗ୍‌ଧା ମୂର୍ତ୍ତି ଭୁଲିଗଲି ମୋର ନୃତ୍ୟ ଛନ୍ଦ ଅର୍ଚ୍ଚନାରେ
ସୁର ସଭା ଅଭିଶାପ କଲା ଗାଡ଼ ଦିନା ବନ୍ଧନର ଡୋରି
ସ୍ୱର୍ଗ ଛାଡ଼ ଚାଲ ଯିବା ଧରଣୀର ଶ୍ୟାମ ସ୍ନିଗ୍ଧ କୋଳ
ହଂସ ମିଥୁନର ସମ ନୀଡ଼ ରଚି କମଳ କୁଞ୍ଜରେ
ଅଳସର ଅପରାହ୍ଣ ବିତାଇବା ତରଙ୍ଗ ମେଳରେ ।
ସନ୍ଧ୍ୟାର ତାରକା ତଳେ ଅନ୍ନପାନ ଦେବି ମୁଁ ସଜାଡ଼
ଶୟନ ସଙ୍ଗୀତେ ଶଯ୍ୟା ବିଛାଇବି ପଣନ୍ତ ପସାରି ।"
ଆଜି ତୁମେ କହିଥିଲ,
"ଅନନ୍ୟାର ପ୍ରେମେ ଦେଲେ ପଦ

ଅରଣ୍ୟେ ଅରଣ୍ୟେ ଭ୍ରମ ପଥେ ପଥେ
ଫେରବ ଶ୍ୱାପଦ !"
ତାହାପରେ ଛିନ୍ନ କଲ ନ୍ଲାପଦ୍ମ
ଭୂପ୍ରସ୍ଥାନ ଲଗି
ଟଙ୍କ ମୁଁ ତୁମଲାଗି ହେଲ କଷାୟ ବସନଧାରୀ
ପ୍ରେମର ବୈରାଗୀ ।

## ସ୍ମୃତି

ଅତୀତ କଥା କ
ନାହିଁ ଦିଏ ଅନୁଶୋଚନା
ଅୟି କୁବଳୟ ଲୋଚନା !
ଯାଶୋର ଚଲ କ
ନଶା ଅଭିଶାର
ଝଡ଼ର ଲଗ୍ନେ
ଏକା ଆସିବାର
ଯାଶୋର ଗଲ କ
ଭୂ-ବଳୟ ତଳେ
ନୂତନ ସୃଷ୍ଟି ରଚନା !

ବୃନ୍ଦାବନ ଫେର
ଏ ଯାନ ଅୟନେ
ଅନୁକଂପାର
ବକଚ ନୟନେ
ଯାଶୋର ଗଲ କ
ଗୀତ ମୂରଛନା
ଅୟି ଅମୃତ-ବଚନା !
ନାହିଁ ଆଜ
ଅନୁଶୋଚନା !!

## ସ୍ୱପ୍ନଭଙ୍ଗ

ମୁଁ ଗୃହିଁଲି, ତୁମେ ଗୃହିଁ ମୋତେ
ବସ୍ତ୍ରଧ୍ୱରେ ହସିଲ ଅଳପ
ମନେ ହେଲା ମିଳନ ଆସନ୍ନ
ଗତାୟୁ ସେ ବିଚ୍ଛେଦ କଳପ ।
ସେଇ ନମ୍ରମିତ ଚକ୍ଷୁ ମୃଦୁ ଗ୍ରୀବାଦଣ୍ଡ
ରହସ୍ୟ ଆବୃତ ଶାଢ଼ୀ ତଳେ ତଳେ
ଲବଙ୍ଗ ଲତିକା ତନୁ ଅଙ୍ଗ
ମନେ ହେଲା ସବୁ ପରିଚିତ
ମନେହେଲା ସ୍ୱର୍ଗଭ୍ରଷ୍ଟା ! ତୁମର ଇଙ୍ଗିତ
ଅତି ପରିଚିତ ।

ଝୁଙ୍ଗ ଗଙ୍ଗଶିଉଳିର ପଥେ ତୁମେ ଫେରିଥିଲ
ପୃଥୁଳ ବେଣୀର ଭରୁ ଶିଥିଳ ବକୁଳ
କେଇମାଳ ଝରିଥିଲା
ଅଳକର ଗନ୍ଧେ ସୁରଭିତ
ଅତି ପରିଚିତ !

ଏଇ ତବ ଅଭିସାର ? ଏଇ ତବ ସପନ ସଞ୍ଚାର ?
ସ୍ୱର୍ଗ ବିଦାୟ ବେଳାର ଯନ୍ତ୍ରଣାର ଏଇ ସୁବର୍ଣ୍ଣର ?
ଏ କି ଶାପ ମୁକ୍ତ ଆରେ ସଖି,
ତୁମ ମାଡ଼େ ପ୍ରାଣ ପକ୍ଷୀ ଅଭିସାର ମାଗେ
ସେଇ କଥା ଜାଣ କି କୌଣସି !

## ଉତ୍ତରାୟଣ

୧

ଉତ୍ତରାୟଣ ସୂର୍ଯ୍ୟର ହ୍ରାସ
ଓ ସ୍ୱର୍ଣ୍ଣାଳୀ ଧାନ,
ହାଡ଼ର ଶିଶିର ଆଜ
ଖର୍ଜୁରରେ ମାଟିର କଳସୀ
କଣ୍ଠାଳୀର ଗାନ୍;
ଶଳ ରୌଦ୍ର ସନ୍ତରଣ ମାଳ ସ୍ତରେ ସ୍ତରେ,
ସମସ୍ତ ଲାଳସା ଏଥେ କାମନାର ସୁପ୍ତ ହୋଇପଡ଼େ ।

୨

ଗୁଚ୍ଛ ଗୁଚ୍ଛ କଣ୍ଠାଧାନ
ଘାସର ଆଘ୍ରାଣ
ଝିଂଟିକାର ରୋମନ୍ଥିତ ଗାନ ।
ପୁଷ୍ପ ଶୁଭ୍ରେ ପ୍ରଗଲ୍‌ଭ ଅରଖ,
ଗ୍ରାମ ଗାମୀ ଶକଟର ତୈଳହୀନ ଅଖ
କରଇ ପ୍ରଳାପ ।

ଗର୍ଭ ଲୋଖ୍ ସାପ
ଢବା ନଦ୍ରା ଯାଏ ।
ଖର୍ଜୁରର ଗ୍ଳପ୍ସେ
ପିଠା ସାଥେ ଗୁଡ଼ ବାଢେ କୃଷକ ସୁନ୍ଦରୀ,
କଣ୍ଟାଳୀର ଜଳଯାନ
ଲଙ୍କା ଲୁଣ ଚହ୍ଲାଇ ଗଗରୀ ।
ଦୂରେ ଆମ୍ର-ଗ୍ଳପ୍ସା-ଶାପୂୀ ଗ୍ରାମ,
ପଳାପୂନପଣ୍ଟୀ ଖୁରୁ ପ୍ରାଣ
ଏ ଫସଲ କ୍ଷେତ୍ର କୋଣେ ମାଗଇ ବିଶ୍ରାମ !
୩
ଅପରାହ୍ନେ ଯୋଝଣର କଇଁ
ସୂର୍ଯ୍ୟ ସ୍ନାନେ ପଡ଼ ଧୀରେ ନଇଁ,
କଣ୍ଟା ଧାନ୍ୟେ ଛପ୍ତ ହୁଏ ଦାଆ
ତାଡ଼ ଅମ୍ଳ ମଧୁ ପାନେ ମଭୁଆର ବାଆ
ବାପୁ୍ା ବସା ଦୋହଲଇ ଯାଏ ।
ରଖୁଆଳ ଗାଏ
ପାଣି ସୁଆଙ୍ଗର ଏକ ବପ୍ପୋଗାନ୍ତ ଗୀତ ।
ସ୍ୱର୍ଣ୍ଣ ଡ଼େଉ ବାଡ଼ି ଆସେ
ହାଇମନ୍ତୀ ଶୀତ ॥
ଗ୍ଳପ୍ସା ଧୀରେ ନୁଏଁ
କୃଷକ ଗୃହିଣୀ ଶିରେ ଫସଲର ସ୍ୱର୍ଣ୍ଣାସନେ
ଲକ୍ଷ୍ମୀ ଫେରେ ଗୃହେ ।
ଝିଂକାରୀର କଂଠେ କଂଠେ
ବ ୍ଦପେ ପ୍ରାନ୍ତର,
ସୂର୍ଯ୍ୟର ସିନ୍ଦୂର ନଭେ
ବହ୍ନିବର୍ଣ୍ଣ ମାଳ ଗୁଣ୍ଠନର
ଖସିପଡ଼େ ଗ୍ଳପ୍ସା,
ଆହା !

୪

ପ୍ରଦୀପର ନିମନ୍ତ୍ରଣ
ଅଗ୍ନିସ୍ନାନ ପାଇଁ ପତଙ୍ଗରେ
ରନ୍ଧନର ମ୍ଳାନ ଧୂମ୍
ନଏଁ ଅଙ୍ଗନରେ ।
ସିଝା ହରଡର ଛୁଇଁ ପୋଡ଼ା କନ୍ଦମୂଳ
ହୁଏ ଜଳ ଯୋଗ ଅନୁକୂଳ,
କାଷ୍ଠ ଅଗ୍ନି ପାଶେ ।
ଧାନ୍ୟ ସ୍ତୂପୁଁ ମୂଷିକର
ନବାନ୍ନ ଆୟୋଜନର କ୍ଷୀଣ ଧ୍ୱନି ଆସେ ।
ସଂକୀର୍ତ୍ତନ ମଣ୍ଡଳୀର ମୃଦଙ୍ଗ ସଞ୍ଚାର
ଶୁଭେ ଅନ୍ୟ ଗ୍ରାମେ
ଦେହଛାଡ଼ ଦେହାଶ୍ରିତେ
ଆତ୍ମା ଖୋଜି ବୁଲେ ଆତ୍ମାଶ୍ରମେ

୫

ଘରେ ଘରେ ନିଭିଆସେ ଦୀପ
ଛାୟାକେତୁ ନଭେ ମଣ୍ଡଳରେ
ଗ୍ରାମ ପ୍ରାନ୍ତ ଅରଣ୍ୟରୁ ଶୃଗାଳର ଘୋଷ ଆସେ
ପ୍ରଥମ ପ୍ରହରେ ।
ଆକାଶ ଆସଇ ନଇଁ ଧରଣୀର ବୁକୁପରେ
ସ୍ୱପ୍ନମୟ ବେଶେ,
ମନରୁ ମାୟା ତମିରେ ଚେତନାର ପରଶ ଉନ୍ମେଷେ ।

# କେଉଁଠି ସୁନାର ଦ୍ୱୀପ

କେଉଁଠି ସୁନାର ଦ୍ୱୀପ ?

ସୂର୍ଯ୍ୟଆଡ଼େ ତେଜ ଭାଙ୍ଗି ପଡ଼େ ।
ପଥର ପ୍ରଖର ଦିଶା ଯଦି ହଜେ ସେଇ ଜଳ ଝଡ଼େ
ଫେନାଇ ଉଠଇ ଖାଲି
ତରଳ କଲ୍ଲୋଳ ନୀଳ ବକ୍ଷ
ସାଗରେ ଆକାଶେ ଗୁଳେ ତିମିର ସାଳସ;
ଆକାଶ ଦୋଳକେ ଦେଇ ସ୍ୱପ୍ନର ଇସାରା
ତୁମେ ବୋଧେ ଦେଖାଦିଅ ହୋଇ ନାମି ତାରା !

କେବେ ଯଦି ତରଙ୍ଗରେ ଧୌତ ହୋଇ
ଏକ ଉପକୂଳେ
ଶୀର୍ଣ୍ଣ ଗୈରିକ ନଦୀର ମୁହାଣରେ ଉଠିଆସ ଭୁଲେ
ବୃଦ୍ଧ ଶିମୁଳୀ ଅନ୍ଧାରେ ଶାଖାର ଅଂଚଳେ
ଜ୍ୟୋତିରିଙ୍ଗଣଟି ଦେଖେଁ ନଭେ ଆଉ ଜ୍ୱଳେ ।
ଖୋଲି ଦେଇ କଳାମେଘୀ ପାଟର ଗୁଣ୍ଠନ
ତୁମର ନାସାର ମୋତି ଜ୍ୱଳେ ହୋଇବା ଜ୍ୟୋତିରିଙ୍ଗଣ !

ଏଇ ଉପକୂଳ ନଙ୍କ ସୁନାର ଦ୍ୱୀପର !
ଏଠେ ଅରଣ୍ୟ କୃପଣ କୁଂଠିତ ସାଗର
ଅନ୍ଧାର ଅନ୍ଧାର
କେବଳ ଅନାମୀ ଫୁଲ ଗନ୍ଧେ ଆସେ
ଅରଣ୍ୟ ଲତାର ।
କବଗ୍ଧ ବନ୍ଧନ ଶେଷେ ସୁରଭିତ କରେ
ତୁମେକ ଯାଇଛ ଛୁଇଁ ଏଇ ଅରଣ୍ୟରେ ?
ତୁମର ଦେହର
ଗନ୍ଧ ପାଇ ଭୁଲିଯାଏଁ ସୁନା ସ୍ୱପ୍ନ ସୁନାର ଦ୍ୱୀପର !

ସବସ୍ୱରକ୍ତ ମୁଁ ଆଜ ବକ୍ଷୋଭିତ ଝଡ଼େ
ନିର୍ଜନର ଦ୍ୱୀପର ଧାରେ
ଯେବେ ଅବା ଛୁଡ଼ାହୋଇ ପଡ଼େ
ସାତନନ୍ଦ୍ର ଆଖି,
କସ୍ତୁରୀ ଲେଖା ଚନ୍ଦ୍ରରେ
ମାଳ ପାହାଡ଼ଟି ଆଣେ ଡ଼ାକ ।
ଦେଖେ ଖଣ୍ଡ ଖଣ୍ଡ ସୁନା ବଲ୍କୃତ
ଅଜସ୍ର ଢେଉରେ
ତୁମର ଶୈବାଳ ମାଳ କବଗ୍ଧରେ
ଗ୍ରୀବା ବା ବାହୁରେ
ଅବା ସ୍ୱର୍ଣ୍ଣ ଲୀଳା,
ତୁମେଇକ ସେଇ ସ୍ୱପ୍ନ ଶୀଳା ।

ସାଗରର ମାଳ ସୁଗ ଗୁମ୍ଫା
କାନାରେ ଦ୍ୱୀପ ଅରଣ୍ୟେ, ଏ ମାନଙ୍କ ମାୟା
ଟାଣି ନଏ ଦୂରେ

ସ୍ୱର୍ଣ୍ଣ ମୃଗ ସନ୍ଧାନରେ ରହସ୍ୟର ପୁରେ
ମାଶ ଦୁଇହାତ
ଖୋଲେଁ ଯେବେ ରହସ୍ୟ କପାଟ
ଚକିତେ ଚମକି ଦେଖେଁ ହାତେ ନେଇ ସୁନାର ପ୍ରଦୀପ
ତୁମେଇ ରହିଛ ଛୁଡ଼ା ଅଙ୍ଗର ଆଲୋକେ
ସୁନାକଶ ଏ ନିର୍ଜନ ଦୀପ !

## ଦିବା ରାତ୍ରିର କାବ୍ୟ

୧

ରୌଦ୍ରରେ ରଂଜିତ ଦିନ
କ୍ଷେତ୍ର ଜଳବନ୍ଧେ ଅଗଣିତ ଶିଶୁ ମୀନ ।
ଶାମୁକା ଓ ଜୋକ
ଆଉ ଶିଉଳୀର ମଳାଭ ବସ୍ତୁ,
ଧାନ୍ୟର ଶିଶାରେ ଗୂଢେ ଦୁଗ୍ଧର ସଂଚୟ ।
ଦୂରେ ଧର ମେଘ
ବିଳମ୍ବିତ ବାୟୁର ଉଦ୍‌ବେଗ ।
ବାଲୁଙ୍ଗାର ରକ୍ତଶିଖା ଶସ୍ୟ ଶ୍ୟାମେ
ପୁଷ୍ଟ ବନ୍ଧୁ ଘାସର ତରଂଗେ
ଦୂର ଗୃଧ୍ର ଅଂଗେ
ରୌଦ୍ରର ସ୍ୱର୍ଣ୍ଣ ଲେଖନ; ମୃଗ ଶାବକର
ଗଳଘଣ୍ଟି ଧ୍ୱନି ଶୁଭେ ଅଳସ ମନ୍ଥର ।
ଗ୍ରାମ ଗୃହପାଶେ
ଅନ୍ନର ସଂଭାର ଗୂଢେ, ଇକ୍ଷୁ କ୍ଷେତ୍ରେ ମଧୁ ନଇଁ ଆସେ ।

୨

ତଳ ତଣ୍ଟୁଳ ଗୁଣ୍ଡରେ ସଜନାର ଗୋମୟର ସିଞ୍ଚିତ ପ୍ରାଙ୍ଗଣେ
ଏ ପ୍ରଥମ ଅବକାଶେ ମୁଖର ଲାବଣ୍ୟ ଦେଖେ ସୁଲଭ ଦର୍ପଣେ
କୃଷକର ଯୋଷା
ଶୃଙ୍ଖଳା ଓ ଝୁମ୍ପା କାଟି ଦେଇ ଭାଙ୍ଗେ ବାମାବର୍ତ୍ତି ଖୋଷା
ଭାଲେ ଲେଖେ ବନ୍ଦ୍ ଗୋରଚନା ।
ଅଗଣାର ତଳେ କରେ ଗେଣ୍ଡୁ ଫୁଲ ହରଦ୍ରାର ସ୍ୱପନ ରଚନା,
ବାଡ଼ ଦେହେ ଜହ୍ନୀ ଆଜି ପୋଇଲତା ଆଲିଙ୍ଗନ ଠାଏ ଠାଏ ଗୁଡ଼ି
ରୌଦ୍ର ଶୁଷ୍କ ହୁଏ ତହିଁ
ପରଚିତ ଆର୍ଦ୍ର ମଳ ଶାଢ଼ୀ ।
ଏ ନଗର ବାସେ
ଗ୍ରାମର ଶାରଦ ସ୍ୱପ୍ନ ରହି ରହି ଆସେ !
କାଶ ଶ୍ୱେତ ନଦୀ ଘାଟ ପଥର ପାହାଚ
କୁନ କୁନ କେତେ ରୂପା ମାଛ
କାଚ ଶୁଭ୍ର ଇଚ୍ଛା ନଦୀ ହୋଇ ଦୂରେ ଇବ ସଙ୍ଗେ ମିଶେ,
ପଛେ ଆସେ ବସ୍ନାନାର୍ଥିମା ସେ !
ମୁଗ ଆଜି କୋଳଥରେ ପଥ ହଜେ
କ୍ଷଣ କ୍ଷେତ ପୃଷ୍ଠରେ ପାଗଳ
ଶୂନ୍ୟେ ଶୁଣ ଉତ୍ସବ ମାଦଳ
ଦୂର ଅନ୍ୟ ଗ୍ରାମେ
ଛନ୍ଦତାର ବଶ୍ରାମ ଓ ପ୍ରଚୁରର ସୁସମ୍ବାଦ ଆଣେ !

୩

ତମିର ଅବଗୁଣ୍ଠନ
ତାଙ୍କେ ଯେବେ ଧରଣୀ ନୟନେ,
ଅବାକ୍ ନିର୍ଜନେ

ଆକାଶ ନୀଳ ତରଙ୍ଗେ
ଛାୟାପଥ
ରଚେ ଉତ୍ତମାଶା ଅନ୍ତରୀପ···।
ଜ୍ୱଳେ ସଞ୍ଜଦୀପ
ଅଂଗନେ ଅଂଗନେ
ଗାଭୀଶାଳ ନିକ୍ୱଣିତ ମଶକର ଗୁଂଜନେ ଗୁଂଜନେ ।
ଝିଣ୍ଟିକାର କଂଠ ବୀଣା ଶସ୍ୟର ତିମିରେ
ଶୁଭେ ଗ୍ରାମପ୍ରାନ୍ତରେ ।
ନିଦ୍ରା ନିର୍ଜନ କୁଟୀରେ କରି ଦ୍ୱାର ବନ୍ଦ
ଇଙ୍ଗୁଦ ତୈଳ ଆଲୋକେ ଏକାଦଶ ସ୍କନ୍ଧ
ପାଠକରେ କୃଷକ ଦୁଲଣ୍ଡ
ରାତି ଅଭିସାର ଲାଗି ପିଙ୍ଗଳା ଯେ ବାସନା ପ୍ରୟାସୀ ।
ଏ ନଗର ବାସେ
ନିଶ୍ଚିନ୍ତ ତିମିର ସ୍ୱପ୍ନ ରହି ରହି ଆସେ ।
ମେଘର ଚନ୍ଦନ ତଳେ ଜ୍ୟୋତ୍ସ୍ନା ଅସ୍ତମିତ
ମୃତ ଚନ୍ଦ୍ର ପ୍ରଭା,
ପେଚକ ଜଣାଏ ତାର ବଦାନ୍ୟ ବେଦନ,
ଆକାଶ ଅଳନ୍ଦ ଧୁଏ ତାରା ଦୀପାବଳୀ ।
ଶୃଗାଳ ପ୍ରହର ଘୋଷ
ରହି ରହି ଆସେ;
ସ୍ୱଚ୍ଛ ଅନ୍ଧକାରେ ଉଡ଼େ
ପ୍ରତୀକ୍ଷାମାନା ସେ ।
ଭାସିଆସେ ପରିଚିତ କବରୀର ସୁରଭି ସଞ୍ଚାର
କଙ୍କଣ ନିକ୍ୱଣେ ଧୀରେ ବନ୍ଦ ହୁଏ ଦ୍ୱାର ।

ନଭେ ମଣ୍ଡଳର ବନ୍ଧ
ନେଇ ଶସ୍ୟ ଦଳେ
ଶିଶିରର
ମଣିଦୀପ ଜ୍ୱଳେ ।
ଅରୁନ୍ଧତି ଅସ୍ତଯାଏ
ସପ୍ତର୍ଷିରେ ପ୍ରଦକ୍ଷିଣ କରି
ଗଭୀର ତୃପ୍ତି ଆବେଶେ
ଢଳିପଡ଼େ
ଗାଢ଼ ବାହୁବନ୍ଧ ।

# ଏଥେ କି ସାଗର

୧

ସିନ୍ଧୁ ଗର୍ଜି…
ସିକତା…
ତରଙ୍ଗ… ।
ସଲୀଳ ବାହୁ ଲତିକା ଊର୍ଦ୍ଧ୍ୱେ ତୋଳି
ମାଗେ ଲୀଳା ଚନ୍ଦ୍ର
ସାଗର ସମ୍ରାଟ କନ୍ୟା
ଆଶ୍ଳେଷି ସେ ପ୍ରବାଳ ପ୍ରାସାଦ,
ଅଦ୍ଭୁତ ଜଳ ପ୍ରହରୀ ବର୍ଚ୍ଛା ଫିଙ୍ଗି ମେଢେ ତୋଳେ
ସେ ଇଚ୍ଛାର ଘୋର ଶଙ୍ଖନାଦ ।

୨

ମନେହୁଏ ସୃଜନର ସୁନ୍ଦରୀ ସନ୍ଧ୍ୟାରେ
ସିନ୍ଧୁର କଲ୍ଲୋଳ ତଳେ
ଜଳନ୍ଧର ନଗରୀର ଧାରେ
ମୁଁ ବି ଥିଲି !
ଶଙ୍ଖ ସୌଧ ବାସେ
ସାଗରିକ ପ୍ରାଚୁର୍ଯ୍ୟ ପ୍ରୟାସେ

ନୀଳା ମୁକ୍ତା ଆହରଣେ,
ସନ୍ତରଣେ
ମତ୍ସ୍ୟକନ୍ୟା ସହ;
ନଥିଲା ଜୀବନ ପ୍ରଶ୍ନ,
ଖାଲି ସମାରୋହ
ଶୋଭାଯାତ୍ରା ।
ସାଗର ବେଳା କି
ଏକ ରଙ୍ଗମଞ୍ଚ, ତା'ର
ନାଗରିକ ନାଗରିକା
ନର୍ତ୍ତକ ନର୍ତ୍ତକୀ !

୩

ମନେ ପଡ଼େ (ପଡ଼େ ନା ବା ମନେ !)
ସମ୍ରାଟ ନନ୍ଦନ ଚନ୍ଦ୍ର ଇଚ୍ଛାର ସାଧନେ
(ସାଗର ପ୍ରହରୀ ମୂର୍ତ୍ତି)
ନୟନ ଇଂଗିତେ ତାର
ଲଂଫ ଦେଲା ମେଘେ
ସେ କେଉଁ ଉଦ୍‌ବେଗ !
ପାଇଲା କି ଚନ୍ଦ୍ରର ସନ୍ଧାନ !
ମେଘେ ମେଘେ ଆରୋହଣ
ଆକାଶର ନୀଳେ ଭ୍ରମମାନ
କେବେ କେଉଁ ଶ୍ରାବଣୀ ସନ୍ଧ୍ୟାରେ
ସଘନ ବର୍ଷଣ ଘଟା ଘୋର
ବାରିଧାରେ
ଓହ୍ଲାଇଲା ପୁଣି କେଉଁ ଗିରିଦ୍ରୋଣେ
କି ଅବା ଅରଣ୍ୟେ
ଚନ୍ଦ୍ର ଅନ୍ୱେଷଣେ !

ପୃଥିବୀରେ ବିସ୍ତାର ଭ୍ରମଣେ
ଜନପଦେ ନଗର ନିର୍ଜନେ
ତୃଣ ତରଙ୍ଗିତ ପ୍ରାନ୍ତେ···
ମାୟାବତୀ ବିସ୍ମରଣୀ ଆସି
କଲା ମୋତେ କୁଳାୟୁ ପ୍ରବାସୀ ।
ପାଶୋରି ମୁଁ ଦେଲି ଆଚମ୍ବିତେ
କି ସନ୍ଧାନ ସେ କାର ଇଂଗିତେ !

୪

ଆଜିର ଏ ସିକତାରେ ଲମ୍ବମାନ
ଚଂଚଳ ସାଗର
କରିଦିଏ ମତେ ଜାତିସ୍ମର ।
ଏ ତରଙ୍ଗ ତଳେ କାହିଁ
ତିଳୋତ୍ତମା ପ୍ରବାଳ ତୋରଣେ
ଚନ୍ଦ୍ର ପାଇଁ ଆଶ ବାନ୍ଧି ସାଗର ସମ୍ରାଟ କନ୍ୟା
ସେ ଦିନ ସ୍ମରଣେ
ଗବାକ୍ଷର ପାଶେ
ଗୁହେଁ କି ମୋ ଆଗମନୀ ଆଶେ !
ତରଙ୍ଗେ ତରଙ୍ଗେ ତାର ଇଚ୍ଛା ଆସି
ଲେଖେ ଆଲିଂପନା
ସାଗରିକ ଫେନ ପୁଷ୍ପ ଫିଙ୍ଗି ଉର୍ଦ୍ଧେ
କରେ ବନ୍ଦାପନା,
ଓଷ୍ଠ କମ୍ପନରେ ତାର ବସଣୀର ମୁକ୍ତଝରା ଝୁଲି
କଲ୍ଲୋଳେ କି
ତୋଳେ ଦୁଳଦୁଳି !
ସାଗର ସାମ୍ରାଜ୍ୟ ବାସ ଆଶେ
ମୁଁ କି ଫେରି ଯିବି
ସେଇ ସ୍ୱପ୍ନାବତୀ ପାଶେ !

କେଉଁ ଉପହାର ନେବ ?
ଆଦେଶ ବା ପାଇ କୋ଼ପନାର
ବାସ ହେବ ସିନ୍ଧୁ କାରାଗାର !
ଦ୍ୱିଧା ଆଣେ ପ୍ରଶ୍ନ ଜୀବନର—
ଏଇ ଭୂମି ଏଇ ବ ସାଗର
ଏଥେ ଲେଖା ସ୍ୱପ୍ନର ଲିପିକା
ତଥାପି କାହିଁକି କହ ବଂଶବାର
ବଳିଷ୍ଠ ଭୂମିକା ?

୫

ନାନା ରୂପେ ତୁମେ ନାନା ସ୍ଥାନେ,
ଦଣ୍ଡର ବିଧାନ କର କଠୋର ଶାସନେ !
ନିର୍ମାଲ୍ୟ ସମାନ
ମଥା ପରେ ସେଇ ସବୁ ବୋଳି
ବିଏ ମୁଁ ସମ୍ମାନ ।

## ଏ ପୃଥିବୀ

ଫିଙ୍ଗି ମାଟିର ନିର୍ମୋକ    ପ୍ରଜାପତି ସମ
ବିସ୍ତାରିଲି ଡେଣା
ମାନର ଉଷ୍ଣୀକ ନେଇ ଭୁଲି ଗଲି ଆତ୍ମା
ଜୀବନ ସଂଗ୍ରାମେ
ମୁଁ ବି ଏକ ସେନା !

ନଗ୍ନ ବଠ ଛାୟା ଗୁଢ଼ ଶୃଙ୍ଗାରବିକାର
ଯେତେ ରୂପ କଳା
ସ୍ତିମିତ ଜ୍ୟୋଃସ୍ନାବଳୟ ସମ ଦିଗନ୍ତତଟେ
ଅପସରି ଗଲା !

ଭାବିଲି ମୁଁ ଫିଙ୍ଗିଦେଲି ବିଷର ପିଆଲା;
ଉନ୍ମତ୍ତ ପିଆସେ
ଅସ୍ୱୀକାର କଲି ଏ ମାଟିରେ
ଅନ୍ୟ ମଧୁ ଆଶେ !
ବିଦେଶିନୀ ବାନ୍ଧବୀର ସମ
ସମ୍ମତିର କଟାକ୍ଷ ପ୍ରସରି
ମାଳମା ଆଲିଙ୍ଗି ଦେଲା
ଓଷ୍ଠ ପୁଟେ ସୁଧା ପାତ୍ର ଧରି ।

ମୃଗନାଭି ପ୍ରେମ ନେଇ
ତା:ହାପରେ ଗୁଲିଲି ଚକତେ
ତାରକାରେ ତାରକାରେ
ଦୂରର ଇଙ୍ଗିତେ
ଶିଖାର ପ୍ରକାଶ ଲୋଭେ ପତଙ୍ଗର ସମ
ଆକାଶର ମନେ ଦେବା ପାଇଁ ସନ୍ତରଣ !
ଗାଇଲି ମୁଁ ସ୍ୱଅର୍ଥୀର ଗାନ
ପ୍ରେମକ୍ରନ କରି ନିଜ ଇଚ୍ଛା ଅଭିମାନ !!

ଅକସ୍ମାତ
ଅନ୍ତରରେ ଅନୁଭବ କଲି ମୁଁ ଆଘାତ
ଅଦ୍ଭୁତ ନବୀନ,
ସମବେଦନା ବନ୍ଧନେ ମୂର୍ଚ୍ଛନା ମୋ
ହୁଏ ଅର୍ଥହୀନ !

ସହସା ଦେଖିଲି ଅଗ୍ରେ ପୃଥିବୀର ଛାୟା
ସ୍ନିଗ୍ଧ ନୀରବେଣୀ ମୁଗ୍ଧ ଭ୍ରାନ୍ତିର ମାୟା
ଓଷ୍ଠେ ଓଷ୍ଠ ସ୍ପର୍ଶ ତଳେ ବାହୁ ଆଲିଙ୍ଗନ
କେତେ ନୀବୀବନ୍ଧର ମୋକ୍ଷଣ
ଗୁଣ୍ଠନ ତଳର କେତେ ଅଶ୍ରୁ ଅଭିମାନ
ତମିସ୍ର ବିଳାସ ପୁଣି ଆଲୋକର ସ୍ନାନ
ଦେଖିଲି ମୁଁ ମିଥୁନର ଛବି
ଗୁଚ୍ଛ ଗୁଚ୍ଛ ଶସ୍ୟ ଆଉ ଶଙ୍ଖଶ୍ୱେତ ଅନେକ ମାନବୀ,
ସ୍ୱେଦ ଦେଇ ରକ୍ତ ଦେଇ
ଗୃହେ ତାରେ ଆଣଇ ମାନବ;
ନୂତନ ପ୍ରାଣର କଳରବ
ତାର ମଧ୍ୟ ଦେଇ ଛୁଟେ,
ବିଷ ମଧ୍ୟେ ଅନ୍ୱେଷି ପିୟୂଷ
ଆଣଇ ସେ ଆତ୍ମାର ସନ୍ତୋଷ ।

ଇଚ୍ଛାମଣି ନଦୀଟିର ପାଶେ
ଦେଖିଲି ଯେ ବାଳିକାଟି ଭଲ ପାଏ
ଆନ କାର ବଧୂ ହୋଇଗଲା
ମୋ ପୃଥିବୀ ସେ ହୋଇଣ ଆସେ ।

ଆକାଶର ଯେତେ ନୀଳ ଯେତେ ନିଶା
ଦୂର ସଙ୍କେତର
ଆଚମ୍ବିତେ ହେଲା ଦୂରତର !
ମୃତ୍ତିକାର ବିଷପାତ୍ର ଦୁଇ ହାତେ ତୋଳି
ଆକଣ୍ଠ ତୃଷାରେ ପାନ କଲି ।
ଅଗ୍ନି ସ୍ନାନେ ପଙ୍ଗପାଳ ସମ ଆତ୍ମା
ହୋଇ ଭଗ୍ନ ଡେଣା
କ୍ଷତ ରକ୍ତ ସେହ୍ନା
ପଡ଼ିଗଲି ······ ।

ଚେତନାର ନୂତନ ସଂଘାତେ
ଦେଖିଲି ବଲ୍ଲରୀ ବାହୁ ଘେର ଏ ପୃଥିବୀ
ବଧୂ ସମ ଭିଡ଼ିଅଛି ମତେ !!

# ଚନ୍ଦ୍ରଲୋକରେ ସନ୍ଧ୍ୟା

ସନ୍ଧ୍ୟା ଆସେ ନାରଙ୍ଗ ଦିନାନ୍ତେ
ତାର୍ ଗ୍ଲୁସ୍ପା ତୋରଣର ପ୍ରାନ୍ତେ—
ଏ ପ୍ରାନ୍ତର ଚନ୍ଦ୍ରର ପ୍ରାନ୍ତର—
ଏ ପ୍ରାନ୍ତର ଗୈରିକ ମରୁ ଭୂ !
                    ଗୈରିକ ବଳୟୁ ଶେଷେ
                    କୃଷ୍ଣଶିଳା ଆକାଶେ ଆକାଶେ
                    ତୁମର ପୃଥିବୀ ଉଏଁ
                                        ମେଘ କଳଙ୍କିତ
                    ସାଗର ମେଖଳାବଷ୍ଟ ତୁମର ପୃଥିବୀ
                                        ନୀଳଶ୍ୟାମ ସ୍ନାତ ।
ନୈଋତୁରେ ରକ୍ତଜବା
            ଶମନର ଇଙ୍ଗିତ
ଏ ପ୍ରାନ୍ତର କରେ କୁଙ୍କୁମିତ
ଏ ପ୍ରାନ୍ତର ଆଗ୍ନେୟ ଗିରିର
            ଶତା ଶଙ୍କାଙ୍କିତ ।
                            ଗୋଧୂଳି ଅରୁଣ
                            ପ୍ରଗଲ୍‌ଭ ବିଳାସ ନାହିଁ ଆଣେ ଏ ପ୍ରାନ୍ତରେ
                            ଏ ପ୍ରାନ୍ତର ଶ୍ମଶାନରେ
                            ନିର୍ଜନତା ସ୍ରଜ

ତୁମର ପୃଥିବୀ
ଉଇଁ ଆସେ, ଉଦ୍ଭିଦ୍‌ର
ଶ୍ୟାମଳ ଆଲୋକ
ନଶିକ୍ତ କରେ ଏ ପ୍ରାନ୍ତ,
ଏ ପ୍ରାନ୍ତର ପ୍ରେତ ଚରଭୂଇଁ !

ଦୁଃଶୀଳା ମନୁଷ୍ୟ ସମ
ଯାପିତା ପୃଥିବୀ
ବିଷପାତ୍ର ଗୁମ୍ଫା ତଳେ
ମାୟାବିନୀ ଛବି
କରଇ ସୃଜନା ।
ହେଉ ଦୂରେ — ଭୂଖଣ୍ଡ ଲଂଘନ ତଳେ
ଚାଲେ ସମ୍ପ୍ରସାରଣ ଯୋଜନା
ଛିଦ୍ର ପାତ୍ର ସମ ତହିଁ ମଧୁ ବିନ୍ଦୁ ସ୍ରାବେ
ପରଗୃଳକର ଭାଣ୍ଡେ;
ମଧୁ ଚକ୍ରେ ଯେବେ
ମଧୁମକ୍ଷିକାର ବସେ
ସହଯୋଗହୀନ ଆନ୍ଦୋଳନ
ମାରଣ ମନ୍ତ୍ରରେ·ହୁଏ ଆଗ୍ନେୟ ବର୍ଷଣ !

ଏଇତ ପୃଥିବୀ
ଏକଦା ଆଦମ୍ ଇଭ୍
ସ୍ୱର୍ଗ ଏଥେ ସୃଜି
ସର୍ପ ହାତେ
ଦେଇଗଲେ ଗୃହ
ଭଣ୍ଡାରର;
ଶୟତାନ ନିଜେ
ସେଇ ସର୍ପ, ବିଶ୍ୱାମିତ୍ର ସମ
ଶୃଙ୍ଖଳାର
ମଧ୍ୟ-ସ୍ୱର୍ଗ ସୃଜେ !

ଏ ଚନ୍ଦ୍ର ପ୍ରାନ୍ତରେ
ବାମ୍ନବଣ୍ଟ ପୃଥିବୀର
ନଭ ଅଭିସାରେ
ଅଭିଯାତ୍ରୀ ହୁଏଁ
ଆତଙ୍କିତ
ଇଥରର ସ୍ତରେ ସ୍ତରେ
ଭାସି ଆସେ ଶୁଣେଁ
ହିଂସା ଆଉ ଶୋଷଣ ସଙ୍ଗୀତ !

ଆଗ୍ନେୟ କୋଣରେ
ଧୂମକେତୁ ପ୍ରଦକ୍ଷିଣ କରେ—

ଅସ୍ତମିତ ସୂର୍ଯ୍ୟ,
ଚିର ଧାପ୍ୟ ଧ୍ରୁବ
ପ୍ରିୟ ସଙ୍କର୍ଷଣ ଢଏ
ସପ୍ତର୍ଷି ତାରାରେ
ଏ ପ୍ରାନ୍ତର ସୁପ୍ତ
ଗାଢ଼ ମାନେ ।

ଏ ଆକାଶେ ଏ ମୃତ୍ତିକା ତଳେ
ଅଶରୀରୀ ଲକ୍ଷ ଆତ୍ମା
ବିଳପେ ଆକୁଳେ ।
ଯେ କେଉଁ ଚନ୍ଦ୍ର ସଭ୍ୟତା
ଚନ୍ଦ୍ର ଇତିହାସ
ହୁଏତ ସାମ୍ରାଜ୍ୟ ପନ୍ଥୀ ଅତ୍ୟାଚାର
ହାହାକାର ଆଉ ହତ ଶ୍ୱାସ
ଅଦ୍ୟାପି ରହିଛି
ଦୁଃସ୍ୱପ୍ନ ସମାନ ବ୍ୟାପି
କେହି ନାହିଁ ଗାଏ
ସେ ଗୌରବ ଗାଥା ଆଜ ହାୟ !

ଅହଲ୍ୟା ପୃଥିବୀ
ଅୟୁତ ଶତାବ୍ଦୀ ପରେ ଅଗ୍ନି ସ୍ନାନ ଲଭି
ଚନ୍ଦ୍ର ସମ ମୃତ ଯେବେ ହେବ
ପାଲଟିବ
ମରୁଭୂମେ ସଜୀବ ସବୁଜ
ଶୁଷ୍କ ମହାସାଗର ପଣଖା
କଳଙ୍କର ଘନ କୃଷ୍ଣ ରେଖା
ହେବ ତାର ବକ୍ଷେ
ଅଂହ୍ଲିକ ଗଣ୍ଡ ପାଶୋର
ନିଜ ଏକ କକ୍ଷେ
ଏ ପୃଥିବୀ କରୁଥିବ
ସୂର୍ଯ୍ୟ ପ୍ରଦକ୍ଷିଣ
ମାନପଦ ଶିଳା ଲିପି ଗବେଷଣା ନେଇ
କେ କରିବ କହ ଜୟଗାନ !
ସେ ମୃତ ପ୍ରାନ୍ତରେ ଭୂ ଗର୍ଭିର
ଅନ୍ୟ ଗ୍ରହୁଁ ଅବତରି
କେଉଁ ଅଭିଯାତ୍ରୀନିକ
ଜିଜ୍ଞାସିବ ଏଇ ପ୍ରଶ୍ନ
ତହିଁ ପୁନର୍ବାର ।
ଏ ଚନ୍ଦ ପ୍ରାନ୍ତରେ
ତାର ଗ୍ରହ ମାହାରିକା ଆଲୋକ ଭାସ୍ୱରେ
ଦେଖେଁ ମୁଁ ଚକିତେ
ହୀରକ କର୍ଣ୍ଣିକା ମଣି ମାଣିକ୍ୟ ମର୍କତେ
ଯୋଜନ ବିସ୍ତୃତ ଏକ ସ୍ୱର୍ଣ୍ଣଶିଳା ପରେ
ବସି କି କୌତୁକେ
ମୁଁ ଦେଖେଁ ପୃଥିବୀ ଧୀରେ
ଚଳେ ଅସ୍ତ ଶିଖେ ।
କୃଷ୍ଣାଭ ଗୋଧୂଳି
ବିମ୍ବାନ୍ୱିତ କରେ ଚନ୍ଦ୍ର ଚିର ।

## ଏକା ଚକ୍ର

— ୧ —

ପାହାଡ଼ର ନମ୍ନେ ଏକ ବଳୟୁ ଆବର୍ତ୍ତି
ମଣିଷ ଚଲାର ପଥ
ଛିନ୍ନ ହୁଏ, ଅଗ୍ରସର ହୁଅଇ ପ୍ରସ୍ତୁତ
ସମାନ୍ତରାଳ ରେଖାର ଯନ୍ତ୍ର ପଥ ।
ସଂଶୋଧନ ଚ୍ୟୁତ
ପଲକ ମାହକ ହୁଏ ।
ପ୍ରସ୍ତରେ କଙ୍କରେ
ପଦ ଚହ୍ନେ ଦଳ ଯନ୍ତ୍ର ସ୍ୱାଧିକାର ବିଜ୍ଞାପିତ କରେ ।

— ୨ —

କୃଷିକ୍ଷେତ୍ର ଛୁଡ଼ ଆସେ ଗ୍ରାମୀଣ ମଣିଷ
ସୁଲଭ ପରିଶ୍ରମର ମୁଦ୍ରାର ଆଶିଷ
ପ୍ରାପ୍ୟ ଆଶେ,
ଆସେ ଛୁଡ଼ ପଛେ ଗୋଷଶାଳା
କୃଷକର ଗୃହବଧୂ ତନୁ ସ୍ୱାଦେ ଭରିବାକୁ
ଯୋଜକର ତୃଷାର୍ତ୍ତ ପିଆଲ :
ପ୍ରସ୍ତୁତ ହୁଅଇ ପଥ ।
ଋଜୁ ହୁଏ ଯେତେ ତୈଳ ସ୍ନାନେ
ଶ୍ରମିକା/ନାସ୍ତ ସୀମନ୍ତ ରୁକ୍ଷ ହୁଏ ସେତେ ପରିମାଣେ ।

ଶସ୍ୟ ଅଙ୍କୁରରେ ମୃତ୍ତିକାର ସ୍ତନ୍ୟପାନ
ଧାତ୍ରୀସମ ଦେଇ ଯିଏ
ଦେଲା ପ୍ରାଣ ଦାନ ।
ଭବିଷ୍ୟର ରଚୟିତ୍ରୀ ଅଳ୍ପ କିଛି
ମୁଦ୍ରା ବିନିମୟେ
ସ୍ୱେଦସିକ୍ତ ତନୁ ଆଜ ନିଃସ୍ୱ ମନ ନେଇ ପଥେ
ଛିଡ଼ା ହୋଇ ରହେ !

— ୩ —

ବିଷ୍ଟୁ ଖାଦ୍ୟ ବିନେ ମିଳେ
ବିଦେଶୀୟ ରୋଗର ଜୀବାଣୁ
ସ୍ନେହ ଜାତ ଦ୍ରବ୍ୟ ବିନେ କ୍ଷୀଣ ହୁଏ ଭ୍ରାଣୁ
ଜୀବନିକା କଣା, କହ କାହିଁ ପ୍ରିୟା ପ୍ରୀତି !
ପିଷ୍ଟ ଗ୍ରାମ୍ୟ ପ୍ରାଣ ଯେବେ ପୁଷ୍ଟ ହୁଏ ଏଥି
ଜାଗ୍ରତ ଆଜ ଅର୍ଥ ନୀତି ।

ଛୁଟି ଚାଲେ ଯନ୍ତ୍ର ରଥ ଜନ ନାୟକର,
ବିଭିନ୍ନ ପରିକଳ୍ପନା ଆଜି ଯୋଜନାର ସମାହାର
ସମସ୍ତରେ ସଙ୍କୁଚିତ କରେ; ସଦା କାର୍ଯ୍ୟ ବ୍ୟସ୍ତ ପ୍ରାଣ;
କାହିଁ ପରିଶ୍ରମ ଆଜ ପାରିଶ୍ରମିକର ପରିମାଣ !

— ୪ —

ଡଳି ପଡ଼େ ଗର୍ଭବତୀ ଶ୍ରମିକ ରମଣୀ
ଯନ୍ତ୍ରର ଚରଣ ତଳେ,
ଟ୍ରେନାକ୍ତ ସରଣୀ
ଶୋଣିତରେ ସମାନନ୍ଦୀ ମାଖେ !
କିଏ ଆତତାୟୀ ତା'ର ?
ଖାଦ୍ୟ ପ୍ରାଣର ଅଭାବ ? ମୂଢ଼ ଭ୍ରାନ୍ତି କି ?
ଅବା ଯୋଜନାର

ଅଙ୍କମ ବଣ୍ଟନ ମାତ୍ର ?
ବୈଧାନିକ କ୍ଷମତା ବଦଳ ?
କାହାର ମନସ୍କାମନା ଯୂପ କାଷ୍ଠେ
ହେଲା ସେଥି ଆଦ୍ୟ ନରବଳି ?

— ୫ —

ଲମ୍ବି ଆସେ ଯନ୍ତ୍ର ପଥ ।
ଅଗ୍ରଗତ ପରିକଳ୍ପନାର
ସମ୍ବଧାନ ସଭା ମଧ୍ୟେ କରତାଳି ଲାଭ କରେ ।
ମୋଟା ମୁନାଫାର
ଅଙ୍କ କେତେ ଉର୍ଦ୍ଧ୍ୱେ ଗଲା କେ ଦେବ ପ୍ରମାଣ,
ଜାତିର ହିସାବ ଖାତା ଦେଲା କେତେ ତହିଁ ଲୋକସାନ !
ଶ୍ରମିକାର ସେଇ ଶବ ପରେ
ବର୍ତ୍ତମାନ ଭବିଷ୍ୟତ ସାଥେ ଯେଉଁ ସେତୁ ସୃଷ୍ଟି କରେ
ସେ ପଥେ ଚଳେନା ଯନ୍ତ୍ର ମୁନାଫାଖୋରର
ରଥ ଚକ୍ର ନୁହେଁ ବ ସେ ଜନ ନାୟକର
ସେଇ ପଥେ ଶୋଭାଯାତ୍ରା ନେଇ ଚଳେ ଶବବାହୀ ଦଳ
ଏକ ଚକ୍ଷେ, ପ୍ରାନ୍ତେ ଯାର ଫୁଟି ଉଠେ ପ୍ରାଣେ କମଳ ।

## ଏକ ଆନନ୍ଦ ପ୍ରାର୍ଥନା

ତୁମେ ତ ଦେଇଛ ଅଶ୍ରୁପାତ !
ସେ ଅଶ୍ରୁର ସଙ୍କେତରେ ତେଜର ଆଘାତ
ହୃଦୟର ନୀଳପଦ୍ମ ଫୁଟାଇଲା ଯଦି,
ପାଖୁଡ଼ାରେ ପାଖୁଡ଼ାରେ ତାର ନିରବଧି
ମେଘର ମୃଦଙ୍ଗ ନାଦେ
ତୋଳିଅଛ ଝଡ଼ର ଝଙ୍କାର;
ସମ୍ମାନ କରନ୍ତୁ ତାରେ ତଥାପି ମୁଁ
ଜଳାଞ୍ଜଳି ଦେଇ ଅହଙ୍କାର !
ବର୍ଷାର ବିଦ୍ୟୁତ ବହ୍ନି ନିଭାଇଣ ଯଦି
ତୁମେ ହୁଅ ଫାଲ୍‌ଗୁନର ଲାସ୍ୟର ଲାବଣ୍ୟବତୀ
ମନ୍ଦାକ୍ରାନ୍ତା ନଦୀ
ଲାଜ ପାଟଳିତ ଧାଡ଼ି ଉଦୟ କିନାରେ
ଜୋଛନାର ନଗ୍ନହାସ୍ୟେ
ଉଚ୍ଛ୍ୱସିତ ତାରକା ସମ୍ଭାରେ
ତୁମେ ଯଦି ହୋଇ ଆସ ମହୁଆ ମାତାଲ
ମଳୟର ପରିମଳେ ବର୍ଣ୍ଣେ ବନ୍ଧୁବଧ
ମୁଁ କି ତୁମ ବନ୍ଦାପନା କରିପାରେଁ
ଜଳାଇଣ ଚିନ୍ତାର ସମିଧ !

ଯେ ଯନ୍ତ୍ରଣା ଦିଅ ତୁମେ
ଦିଅ ଯେଉଁ ବଂଚନା ଓ କ୍ଷତ
ଶିଖାଅ, ସେ ସବୁ ମଧ୍ୟେ
ପାଏ ଯେହ୍ନେ ଆନନ୍ଦର ଜ୍ୟୋତି !

## ରାତ୍ରି ପୁନର୍ବାର

ତଥାପି ତ ରାତ୍ରି ଆସେ ନୀଳରକ୍ତ ଦିଗନ୍ତ କିନାରେ
ଦୁରନ୍ତ ଧୂସର ଢେଉ ଆକର୍ଷଣେ ନିର୍ଜନ ହ୍ରଦରେ
ଅରଣ୍ୟ ପ୍ରାଙ୍ଗଣେ ଅବା
ମାଟିର ନିଶ୍ୱାସେ
ନକ୍ଷତ୍ର ନକ୍ଷତ୍ର ଭାସେ
ମର୍କତ ଆକାଶେ ।

ସେ ଆକାଶ କେଉଁ କୋଣେ ଅଜସ୍ର ଜ୍ୟୋତ୍ସ୍ନାର
କୋମଳ ବଲ୍ଲୀର ଘାଟେ
ତୁମେ ଏକା ବସି ପୁନର୍ବାର
ଦୁଇ ହାତେ ସ୍ୱପ୍ନ ବୁଣ !
ଭୁଲି ସବୁ କ୍ଷୋଭ
ସଂଗ୍ରହ କରିବା ଲାଗି ସେ ସ୍ୱପ୍ନ ବର୍ଣ୍ଣାଳି
ଆହା ମନେ ଲାଗେ ଲୋଭ !

ତେଣୁ ଯଦି
ଲକ୍ଷ୍ୟହୀନ ଆକାଂକ୍ଷାର ନ କରି ସାଧନା
ବସି ରହେଁ,
ଉଦ୍ଦାମ ଇଚ୍ଛାର ଯଦି ନ କରେଁ ମାନନା,
ପାନ୍ଥ ଶାଳାର ସଂସାର ନାହିଁ ପାତେ
ତେବେ ମନୋରମା
ରାତ୍ରିକୁ ସାଥିରେ ତୁମ କର ବାରେ କ୍ଷମା !

ମନରେ ଉଇଁଛି ରାତି
ବରଂ ଏଇ ରାତି ନଷ୍ଟ ଘାଟରେ
ଏଇ ମ୍ଳାନ ଶ୍ୟାମ ସୁପ୍ତ ପ୍ରାନ୍ତର ଗହ୍ୱରେ
ଦିବସ ନିଷିଦ୍ଧ କଥା କହେଁ କହୁଛି !
ଏ ହୃଦୟ ରାତିର ନିର୍ଜନ
ପ୍ରସାରିତ ପାର୍ଶ୍ୱ ଶାଖା ଅରଣ୍ୟର ସମ
ନଇଁ ପଡ଼ୁ
ସ୍ୱପ୍ନ ଶିଶିରର ସମାରୋହେ
ଭୁଲେଁ ସୁବର୍ଣ୍ଣ ସୂର୍ଯ୍ୟର
ବହୁ ବର୍ଣ୍ଣ ମୋହେ !

# ପ୍ରଥମ ପ୍ରଶ୍ନ

— ୧ —

ହେ ଆକାଶ,

ଧନ୍ୟ ତୁମେ ଦିଅ ବାରେ ବାରେ
ଧରିତ୍ରୀର ଗେହବାସେ ରୁଦ୍ରାଲୋକେ
ନିରନ୍ଧ୍ର ଅନ୍ଧାରେ
ପ୍ରଭାତ ସନ୍ଧ୍ୟା ସଙ୍ଗମେ ଗିରି ଚନ୍ଦେ
ଅବା ସିନ୍ଧୁଗ୍ରାସେ
ନଦୀର ବକ୍ଷକଳସ୍ୱେ ନୀଳାଞ୍ଜନୀ ଅରଣ୍ୟ ଉଚ୍ଛ୍ୱାସେ
ଅବିଚଳ ପ୍ରସନ୍ନ ପ୍ରକଟ,
ତୁମେ ନିତ୍ୟ ନଟ !
ମଧୁମତୀ ଏ ଧରିତ୍ରୀ ଗନ୍ଧେ ବର୍ଣ୍ଣେ ନୂତନ ଶୃଙ୍ଗାର
ନିତ୍ୟ ରଚେ
ସ୍ୱର୍ଣ୍ଣେ ଶ୍ୟାମେ ନାରଙ୍ଗେ ରଜତେ
ତୁମ ଅଭିସାରେ
ଚିର ଆକାଂକ୍ଷାରେ ।

ହେବରେ ବା ସ୍ଖଳିତ ହେବ
ସେଇ ନୀଳାମ୍ବର
ବିକଶାଇ ତନୁ ଦେହ ଉଲଗ୍ନ ସୁନ୍ଦର
ଫିଙ୍ଗି ଦେଇ ରହସ୍ୟର ସମସ୍ତ ନିର୍ମୋକ
ତୁମର ଅନଙ୍ଗ ଅଙ୍ଗୁ ପରିଚ୍ଛନ୍ନ
ସୁନ୍ଦର ଆଲୋକ
ବିଚ୍ଛୁରିବ ଭାଙ୍ଗି ଦେଇ ଜଡ଼ିମା ସଂଶୟ,
ତୁମ ଅନନ୍ତତା ହେବ ଧରିତ୍ରୀର ସୀମା ପରିଚୟ ।

— ୨ —

ଧରଣୀର ଏ ଗୈରିକ ପଥେ
ସୃଜନର ଶୋଭାଯାତ୍ରା ଗୁଲେ ଦେଖ
ଏକ ଚକ୍ର ରଥେ
ଯେବେ ସାରଥିର କରେ ବଲ୍‌ଗା ରଜ୍ଜୁ
ଛିନ୍ନ ହୋଇ
ହୁଅଇ ଦ୍ୱିଖଣ୍ଡ
ହ୍ରେଷା ଭୁଲି ଅଶ୍ୱ ହୁଏ ମୂଢ଼, ହୁଏ ଭଗ୍ନ
ଅକ୍ଷଦଣ୍ଡ
ବ୍ୟଭିଚ୍ଛର ହୁଏ ଗୁରୁ ଲେଲିହ ଉଠେ ଅଗ୍ନି ଜିହ୍ୱ
ପ୍ରଳୟର ହାସ
ସେ ଦାରୁଣ ସଙ୍କଟରେ
ଅଗ୍ନି ଶଙ୍ଖ ବଜାଅ, ଆକାଶ !
ଏ ଅହଲ୍ୟା ଧରଣୀର ଗର୍ଭ କୋଷେ
ଉଲ୍କାବୀର୍ଯ୍ୟ ଚେଇଁ ଉଠେ
ସେ ଆହ୍ୱାନ ଶୁଣି
ଉଦୟ ଭାନୁ ଉତ୍ସବ ଝଗ୍‌ଚଳୟେ ପୁଣି
ହୁଏ; ଜୟୋଲ୍ଲାଭ କରେ ସନାତନୀ ସେନା
ତୁମେ ଆସ ସେ ଲଗ୍ନରେ
ମାଟି ପରେ ଗ୍ଲାଇ,
ସ୍ୱପ୍ନ ଶ୍ୟାମ ପକ୍ଷୀ ଡେଣା !

— ୩ —

ନପୁତ କଲ୍ପର ପରେ ଆଜଠାରୁ
ଯେ କେଉଁ ପ୍ରଳୟେ
ହରିଣ ଏଇ ଧରଣୀ
ହେବ ଯେବେ ନହାର ବଳୟେ

ଭସ୍ମଟୀକା ତାର
ଭ୍ରୂମର ଲଲାଟ ତଟେ ଶୋଭିବ କି,
ଯଥା ଅନିବାର
ଶୋଭାପାଏ ଚନ୍ଦ୍ରର ତିଳକ
ମହାକାଳ ! ଜଟା ଜାଲୁଁ ଝର ଗଙ୍ଗୋଦକ
ସମସ୍ତ ସଂଚିତ ପାପ କରି ଅବସାନ
ଧରଣୀର ଭସ୍ମ ବିନ୍ଦୁ ପରେ ନକି
ଦେବ ମୁକ୍ତି ସ୍ନାନ !
ଅବା ସଖ ତନୁ ଭସ୍ମ ସମ
ହେ ସନ୍ୟାସି, ଧରଣୀର ଭସ୍ମରାଶି
କରିବ କି ସର୍ବ ଅଙ୍ଗେ
ସ୍ନେହେ ବିଲେପନ !

ଅନାହତ !
ସେତେବେଳେ ମୃତ୍ତିକାରେ କଳଙ୍କିତ
ଏଇ କବିତାର
ଛନ୍ଦର ଆଘାତ
ଲଗିବ କି ଅଶ୍ରୁତ ଝଙ୍କାରେ
ସେଇ ବୀଣା ତାରେ
ଯହିଁ ନଖିଳ ବିଶ୍ୱର ଅଶ୍ରୁ ସିଞ୍ଚିତ ଗୀତିକା
ତୋଳଇ ମୂର୍ଚ୍ଛନା
ବିକଶାଇ ସୃଷ୍ଟିର କଳ୍ପନା !
ଅବା ଫିଙ୍ଗି କୃଷ୍ଣ ଯବନିକା
ଯେତେ ହାସ୍ୟ ଅଶ୍ରୁ ସ୍ନେହ ପ୍ରେମ ଅହମିକା
ପୋଛିଦେଇ କରିବ କି ମୌନ ପରିହାସ ?
ତାଇ ନିରୁତ୍ତର
ହେ ଆକାଶ !

## ସୁଡ଼ଙ୍ଗ ଖନନ

— ୧ —

ଖଣିର ସୁଡ଼ଙ୍ଗ ଅନ୍ଧକାର ମଧ୍ୟରେ
କୋଦାଳର ଆଘାତରେ
ମୃତ୍ତିକାର ବକ୍ଷ ଖନନ କରି
ମୁଁ ଦେଖୁଛି
ପ୍ରାଗୈତିହାସିକ ଡାଇନୋସୁଅରର ସ୍ୱପ୍ନ !
ଆଜି
ସେ ସ୍ୱପ୍ନର ସ୍ତରେ ସ୍ତରେ
ମୁଁ ଅନୁଭବ କରୁଛି
ମୋର ଜନ୍ମ ତିଥିରେ ଆଦିମାତା ଧରିତ୍ରୀର
ପ୍ରସବ ବେଦନା !

ଏକଦା
ମୟୂର କଣ୍ଠୀ ମେଘର ଦେହରେ ଥିଲା
ନୀଳ ବିଦ୍ୟୁତର ସରୀସୃପ ଲୀଳା,
ଭୂମିର ବକ୍ଷ ବିଦାରଣ କରି
ଲମ୍ବି ଆସୁଥିଲା
ତରଳ ଧାତବ ଓ ପଙ୍କ ସ୍ରୋତ ।
ଏପରି ଏକ ଲଗ୍ନରେ
ଯେତେବେଳେ ସିନ୍ଧୁ ବକ୍ଷରେ
ଫେନାଇ ଉଠୁଥିଲା
ବର୍ଣ୍ଣମୟ ଇନ୍ଦ୍ରଧନୁ ତରଙ୍ଗ,

ବଧାଗାର ବେଷ୍ଟଣୀଗାରର
ଏକ ନୂତନ ଅନ୍ୱେଷା ମୁଁ —
ନେଇଥିଲି ମୋର ଅନ୍ତକାୟୁ ଜନ୍ମ !
ବିଚିତ୍ର ଭାନୁର
ମେରୁ ପ୍ରଦକ୍ଷିଣ ସାଥେ ସାଥେ
ମୁଁ ବାନ୍ଧି ନେଇଥିଲି
ଜୀବନ ସଂଗ୍ରାମର ଜୈତ୍ର ରଥ ।
ରକ୍ତର ଅକୁଣ୍ଠ ତୃଷ୍ଣା ନେଇ ଛିନ୍ନ କରିଥିଲି
କେତେ ସହଗାମୀର ହୃତ୍‌ପିଣ୍ଡ ମୃଣାଳ !
ଅନେକ ଅନୁଗାମିମାର ଅନ୍ତଃକେଶରରେ
ଲମ୍ବାଇ ଦେଇଥିଲି
ମୋର ଜୀବନ ପରାଗର ଅମ୍ଲାନ ମାଳା ।
ତାଳମୂଳ ତୃଣର ଆସ୍ତରଣରେ
ଈଶ୍ୱର ଜଟା ଲତାର ଅନ୍ତରାଳରେ
ଅଥବା ଭୂକୁଷ୍ମାଣ୍ଡ କୁଞ୍ଜର କଣ୍ଟକ ଛାୟାରେ
ମୁଁ ବିତାଇ ଥିଲି ସ୍ୱପ୍ନହୀନ ସାୟାହ୍ନ ।
ଉଲ୍‌କା ଜ୍ୟୋତିତ ରାତ୍ରିର
ଲୋଷ୍ଟକ ମହାରିକା ବୃତ୍ତ ତଳେ
ମୁଁ ଅନାଇ ରହିଥିଲି
ନୂତନ ଚନ୍ଦ୍ରର ଉଦୟନ ।

— ୨ —

ପ୍ରକୃତିର ତୋରଣ ଦ୍ୱାରରେ
ମୁଁ କି ଥିଲି ସାମ୍ୟରକ୍ଷକ ପ୍ରହରୀ ?
ଲମ୍ବମାନ ଜୀବନମାଳାର ଏକ ଗ୍ରନ୍ଥି ମୁଁ
କାଗଜ ଚକା ପରି ଝଡ଼ର ମୂର୍ଚ୍ଛନାରେ
ନିଜକୁ ମିଳାଇ ଦେଇ
ବିଦ୍ରୂପ କରିଥିଲି କି ମୋର ଯୋଗ ସୂତ୍ରକୁ ?

ଅକସ୍ମାତ୍ ଦିଗନ୍ତ ଗ୍ରାସ କରିଥିଲା
ତିମିର ବଳୟ !
ପ୍ରଳୟଙ୍କରୀ ଗୌରୀର କଙ୍କଣ ଝଙ୍କାର ସଙ୍ଗେ ସଙ୍ଗେ
ବାଜି ଉଠିଥିଲା
ରୁଦ୍ରର ଡିମ୍ବ ଡିମ୍ବ ଡମ୍ବରୁ !
ମୋର ଜନ୍ମଦାତ୍ରୀ ଧରିତ୍ରୀର
ବକ୍ଷ ପଞ୍ଜର ବିଦୀର୍ଣ୍ଣ କରି
ଲେଲିହ୍ନ ଜିହ୍ୱା ଅନଳ ଉତ୍‌କ୍ଷିପ୍ତ ହୋଇଥିଲା ।
ଭୂ ସ୍ଖଳନ ଓ ସିନ୍ଧୁ ନର୍ତ୍ତନର
ସେ କି ପ୍ରଳୟ ଲୀଳା !!
ସେଇ ଲଗ୍ନରେ
ମୋର ଜୀବନ ସୂତ୍ର ଛିନ୍ନ କରି
ମୁଁ ବିଛାଇ ଦେଲି
ଭୂ ସ୍ତର ତଳେ ମୋର ସମାଧି ଶଯ୍ୟା ।

— ୩ —

ଅଗଣିତ ଶତାବ୍ଦୀ ପରେ
ମୁଁ ଖନନ କରୁଛି
ମୋର କଙ୍କାଳର ସେଇ ଫସିଲ୍,
ଆଜି ଅନ୍ୱେଷଣ କରୁଛି
ମୋର ମେଦର ତୈଳ ସ୍ରୋତ ।
ସେଇ ଫସିଲ୍‌ର ଦୀପଦଣ୍ଡ ଉପରେ
ସେଇ ତୈଳ ଧାର ଇନ୍ଧି
ପ୍ରଜ୍ୱଳିତ କରିବ ନୂତନ ଆଲୋକ ଶିଖା !

ସେଇ ଆଦିମ ଅତିକାୟ ଜନ୍ତୁର
ଏକ ନୂତନ ସଂସ୍କରଣ ମୁଁ
ପ୍ରତିବେଶୀର ଜୀବନ ଅଙ୍କୁର
ଭକ୍ଷଣ କରିବା ପାଇଁ

ଆଜ ଭ୍ରୂଣ ସଂଚୟ ପାଇଁ
ମୁଁ ବଞ୍ଚାଇ ରଖିବ
ସେଇ ଆଲୋକର ଶିଖା !
ଆଜ
ପୁନର୍ବାର
ପ୍ରୋଥିତ କରିଯିବ
ଏହି ଭୂଗର୍ଭ ମଧ୍ୟରେ
ମୋର କଙ୍କାଳ ଓ କପାଳର ଫସିଲ୍,
ଆଜ
ଏକ ଘୃଣ୍ୟ ସଂଗ୍ରାମୀ ଜୀବନର ଇତିହାସ !
ହୁଏତ ଆଗାମୀ ଅଯୁତ ଶତାବ୍ଦୀ ପରେ
ଜନ୍ମ ନେଇ
ଫେର୍ ଖନନ କରିବ
ମୋର ଫସିଲ୍ ଓ ମେଦର ତୈଳ !

— ୪ —

ହେ ମୋର ଜୀବନ ବିଧାତା !
ଯୁଗେ ଯୁଗେ ମୃଗ ଯୂଥର ଶିକାର ପାଇଁ
ମାଂସାସୀ ବ୍ୟାଧ ମୁଁ ଜାଳିଛି
ପ୍ରଦୀପ୍ତ ମଶାଲ !
କିନ୍ତୁ ଏଥର
ଏହି ସୁଡ଼ଙ୍ଗ ଗହ୍ୱରରୁ
ଆଲୋକ ଆନୟନର ସାମଗ୍ରୀ ସଂଗ୍ରହ କରି
ଆଗାମୀ ଯୁଗର ପଥଭ୍ରାନ୍ତ ପାଇଁ
ପ୍ରଭୁ !
ଦୀପ ଜାଳି ଯାଏଁ !!

## ଚୁଷୁଲ୍ ସୀମାନ୍ତର ଏକ ଭୂମିକା

— ୧ —

"ଭୟ ନାହିଁ ଆରେ ଭୟ ନାହିଁ
ନିଃଶେଷେ ପ୍ରାଣ ଯେ କରିବ ଦାନ
କ୍ଷୟ ନାହିଁ ତାର କ୍ଷୟ ନାହିଁ ।"
ଡାକେ ସେନାପତି । ପାଇନ୍ କାନନ
ସଙ୍କଟ ଶିଳା ଆବର୍ତ୍ତି ଘେରି ଚଉପାଖ
ଅଗ୍ର ଦଳର ସୈନିକ ଶୁଣେ
ବଜ୍ର ନିନାଦେ ସେଇ ଡାକ ।

ରାଜପୁତାନାର ନାଗଫେଣୀ ଘେରି
ମରୁଭୂ ଘୂର୍ଣ୍ଣୀ ଉଦ୍‌ବେଳ—
ସିନ୍ଧୁ ସୀମାନା ବନ୍ଧୁର ତଟ ଉପଳ ଭୂମିର କଲ୍ଲୋଳ—
ଅରଣ୍ୟ ଶାଖା ବାହୁ ଉଦ୍ଧତ ପର୍ବତ ପଥ—
ଦେଶ ମାତୃକା ସେ ଡାକ ଡାକେ କି
ଦୂରେ ଥାଇ,
"ଭୟ ନାହିଁ ଆରେ ଭୟ ନାହିଁ,
ନିଃଶେଷେ ପ୍ରାଣ ଯେ କରିବ ଦାନ
କ୍ଷୟ ନାହିଁ ତାର କ୍ଷୟ ନାହିଁ ।"

— ୨ —

ତରଙ୍ଗ ପରେ ତରଙ୍ଗ ସମ
ଶତ୍ରୁ ବାହିନୀ ମାଡ଼ି ଆସେ
"ଚଳାଅ କମାଣ !" ଗୋଳା ବର୍ଷଣେ
ଚୈନିକ ସେନା ଫଂଟାସେ
"ଚଳାଅ କମାଣ !" ସେନାପତି ଡାକେ
"ଶଙ୍କା ବହୀନ ଉନ୍ନତତର କର ଶିର,
ଉନ୍ନତ ଯଥା ଭୁବନ ଧବଳ
ଶୃଙ୍ଗ ଶୃଙ୍ଗ ହିମାଦ୍ରିର !"

ପଙ୍ଗପାଳର ଦଳ ସମ ଆସି ଶତ୍ରୁ ସେନାମାନ
ଅଗ୍ନି ଉଦରେ ରଚେ ସ୍ନାନ
ଘୃଣ୍ୟ ଶୋଣିତେ ଗିରି ସଙ୍କଟ ପଙ୍କିଳ ହୁଏ
ଶବ କଣ୍ଟକମୟ ସ୍ଥାନ ।
"ଚଳାଅ କମାଣ !" ସେନାପତି ଡାକେ
"ଭୟ ନାହିଁ ଆରେ ଭୟ ନାହିଁ ।
ନିଃଶେଷେ ପ୍ରାଣ ଯେ କରିବ ଦାନ
କ୍ଷୟ ନାହିଁ ତାର କ୍ଷୟ ନାହିଁ !"

— ୩ —

ଉପତ୍ୟକାର ଶିଳିତ ବର୍ତ୍ମ
ଅରୁଣ ଲେହିତ ଯାଏ ଦେଖା
ମୁକୁଳିତ ବେଣୀ ଯାଙ୍କସେମିର ସୀମନ୍ତ ତଟେ
ରକ୍ତର କବା ଅନୁଲେଖା !
ବାରୁଦ ବହ୍ନି ଧୂମ କୁଣ୍ଡଳୀ
ବଜ୍ର ନିନାଦେ ଛୁଟେ ଗୋଳା
ଏ ଦେଶ ମାଟିର ଶତ ସନ୍ତାନ
ଆତ୍ମବଳିର ରଣେ ଖେଳା ।

ସହସା ଉଠିଲା ପଶ୍ଚାତ୍‌ଦେଶରୁ
ଶତ୍ରୁ ସେନାର କୋଳାହଳ ରବ··· ।
"ହୁସିଆର୍ !
ହଟିଯାଅ ପଛେ !!" ଡାକେ ସେନାପତି
ପୃଷ୍ଠେ ବାନ୍ଧିଛି ବିଶ୍ୱାସଘାତି
ହନ୍ତଆର୍ ।
ଚକ୍ରବ୍ୟୂହେ କି ଫାଲ୍‌ଗୁନି ସୁତ
ବଜ୍ରମୁଷ୍ଟି ଆବଦ୍ଧ ତାର
ତଲୱାର୍
ଲୁଣ୍ଠିତ କରି ଶତ ସଂଖ୍ୟକ ଶତ୍ରୁର ଶିର
ଡାକେ ସେନାପତି,
"ପଶ୍ଚାତ୍ ପଥ୍ରୁ ଏ ଆକ୍ରମଣ
ଏକ ଶଯ୍ୱତାନି କାର୍‌ବାର୍ ।"
ରକ୍ତ କ୍ଷରଣେ ସେନାପତି ଲେଟେ
ପରିଧି ରଚିଛି ଆତତାୟୀ
ତଥାପି ସେ ଡାକେ, "ଭୟ ନାହିଁ ଆରେ ଭୟ ନାହିଁ
ନିଃଶେଷେ ପ୍ରାଣ ଯେ କରିବ ଦାନ
କ୍ଷୟ ନାହିଁ ତାର କ୍ଷୟ ନାହିଁ ।"

— ୪ —

ବନ୍ଦୀଭୂତ ସେ ସୈନିକ ଦଳ ଦେଖିଣ ଆହତ
ଅବନମିତ ଶିର ଶୋଚମୟ
ଏଇ ପରାଜୟ
ଘାଉଣୀରେ ତାରେ ନେଇଯିବା ଲାଗି
ପ୍ରସ୍ତୁତ ରହୁଁ, ଶୁଣେ ସେଇ ଡାକ,
"ନାହିଁ ଭୟ ଆରେ ନାହିଁ ଭୟ !"
ନମ୍ର ତୁଷାର ଝର୍ଝର ସ୍ରୋତ
ଉର୍ଦ୍ଧ୍ୱେ ଝଟିକା ଆବର୍ତ୍ତ ବେଗ
ସେ ଡାକର ତାଳେ ପ୍ରତିରବ

ଡବ ଡବ ଡବ ଡମ୍ବରୁ ଡାକେ
ଧି ମିଚା ଧି ମିଚା ନୃତ୍ୟେ ମାତଇ
ଶୃଙ୍ଗେ ଶୃଙ୍ଗେ ଭୈରବ ।

ଡାକେ ସେନାପତି ଶିଙ୍ଗାର ଘୋଷେ,
"ଗୁଡ଼ ମତେ ଯାଅ ହଟିଯାଅ !"
କୁଣ୍ଠିତ ସେନା ମରଣୋନ୍ମୁଖ—
କାଣ୍ଡାଗ୍ର ତାର ସୀମାନ୍ତେ ଗୁଡ଼
ଶିଖରରେ ଯିବ ଫେର ହାୟ !!

ରକ୍ତ ବମନେ ଶେଷ ନିଶ୍ୱାସେ
ଡାକେ ସେନାପତି,
"ସେନାପତିର ଆଦେଶ
ପଛକୁ ହଟିଯାଅ !
ଆରେ ଭୟ ନାହିଁ;"
ପ୍ରାଣ ଦେଇ କହେ, "ନିଃଶେଷେ ପ୍ରାଣ
ଯେ କରିବ ଦାନ
କ୍ଷୟ ନାହିଁ ତାର କ୍ଷୟ ନାହିଁ ।"

---

୧୯୬୨ ନଭେମ୍ବର ୨୦ ସକାଳର ବେତାର ବାର୍ତ୍ତା :

ଚୁସୁଲ୍ ସୀମାନ୍ତର ସେନାପତି ବିଶ୍ୱାସଘାତକ ଚୀନାମାନଙ୍କ ଦ୍ୱାରା ପୃଷ୍ଠ ଭାଗରୁ ଆକ୍ରମିତ ହୋଇ ଭୂପତିତ ହୋଇଥିଲେ ଏବଂ ତାଙ୍କୁ ଉଦ୍ଧାର କରିବାକୁ ଆସୁଥିବା ସୈନିକଗଣଙ୍କୁ ପଛକୁ ହଟିଯିବା ନିମନ୍ତେ ଆଦେଶ ଜାରି କରିଥିଲେ ।

ଚୁସୁଲ୍ ସୀମାନ୍ତର ସେଇ ଦିନର ସେନାପତିଙ୍କର ସେଇ ମହାଦାନ ଉଦ୍ଦେଶ୍ୟରେ ।

ଦୁଇ ମାସ ପରେ—

ପେକିଂ ସରକାର ସେଇ ସେନାପତିଙ୍କର ଶବଧାର ଭାରତ ସରକାରଙ୍କୁ ପ୍ରଦାନ କରିଥିଲ । ଭାରତର ରାଷ୍ଟ୍ରପତି ବୀରର ଶ୍ରେଷ୍ଠ ସମ୍ମାନ ପରମ ଚକ୍ର ଦ୍ୱାରା ତାଙ୍କ ସ୍ମୃତିକୁ ଭୂଷିତ କଲେ । ସେ ହେଉଛନ୍ତି ଦୁର୍ଦ୍ଧର୍ଷ ବୀର—ମେଜର୍ ସୈତାନ୍ ସିଂ !!!

# ଏକ ବିନ୍ଦୁ ସିନ୍ଦୂର ଅଙ୍କନ
# ଗୁଣ୍ଠନ ଛାୟାରେ

— ୧ —

## ଏକ ବିନ୍ଦୁ ସିନ୍ଦୂର ଅଙ୍କନ

ଯଜ୍ଞ ବେଦୀ ପରେ ଯହିଁ ପ୍ରଜ୍ୱଳିତ ହୋମ ହୁତାଶନ
ପରିହିତ ରକ୍ତାମ୍ବର ସର୍ବ ଅଙ୍ଗେ ରତ୍ନ ଆଭରଣ
ଲାଜାଞ୍ଜଳି କରେ ବଧୂ ! ଉଷ୍ଣଅଛ, ଉଦଗ୍ର ନୟନ
ଚନ୍ଦନ ଚର୍ଚ୍ଚିତ ଲଲାଟେ ପ୍ରଥମ ଗୁଣ୍ଠନ;
ତହିଁ ମୁଁ ଛୁଟାଏ ଅଶ୍ୱ,
ହ୍ରେଷା ତାର ଶୁଣି କିବା ପାର !
ଖର ରବି ରଶ୍ମି ସ୍ପର୍ଶେ ଉଲଙ୍ଗ ମୋ ଏଇ ତଲବାର !

କ୍ଷୁର ଧାର ନଦୀ ଧାର ଅରଣ୍ୟର କଙ୍କରିତ ପଥ
ଏ ଦୁର୍ଗମ ଗିରିର ସଙ୍କଟ
ଆଜ ମୁଁ ଲଙ୍ଘନ କରି ଯାଏଁ ଦୂର ଦୁର୍ଗର ତୋରଣେ
ହୀନ ଚକ୍ରାନ୍ତରେ ଅବା କି ଅପହରଣେ
ଯୋଜନିବା ଲାଗି କରି ତୁମରେ ବନ୍ଦିନୀ
ଯହିଁ ଶତ୍ରୁ ସେନାପତି, ହେ ରାଜ ନନ୍ଦନ !

ପଥ ମୋର ରୋଧ ପାଇଁ ଜନାନ୍ତକୁଁ ପଡ଼ଇ ବଲ୍ଲମ
ବିଷଳିପ୍ତ ଶର ଲକ୍ଷ୍ୟ ବକ୍ଷର ସଙ୍ଗମ
ତଥାପି ମୁଁ ଆଜ କି ଆବେଗେ
ଛୁଟି ଗୃଲେଁ ଝଟିକାର ବେଗେ
ଅଧୀର ଉନ୍ମତ୍ତ
ରୋଧିପାରେ କେ ବା ମୋର ପଥ !

ସନ୍ତର ପରଖା ସ୍ରୋତ ଲଂଘିଣ ପ୍ରାଚୀର
ବନମଧ୍ୟେ ହୃତ୍‌ପିଣ୍ଡର ସମସ୍ତ ରୁଧିର
ଜଳାଞ୍ଜଳି ଦେଇ ଆଜ ଯିବି ତୁମ ପ୍ରାଙ୍ଗଣର ଦ୍ୱାରେ
ତୁମର ସୀମନ୍ତ ତଟେ
ସିନ୍ଦୂରର ଏକ କ୍ଷୀଣ ବିନ୍ଦୁ ଆଙ୍କିବାରେ ।

— ୨ —

## ଗୁଣ୍ଠନ ଛାୟାରେ

ସନ୍ଧ୍ୟାର ଶାନ୍ତି ନେଇ ଗୁଣ୍ଠନ ଛାୟାରେ
ବହୁ ଦୂର ଜନପଦ ନିର୍ଜନ ଦୁଆରେ
ଯବି ତୁମେ ଜାଳ ସଞ୍ଜଦୀପ,
ଏକ କ୍ଷୀଣ ଚନ୍ଦ୍ରର ପ୍ରତିପ
ରେଖା ଯାଏ ନଭ,
ଏ ପୃଥିବୀ
ଅନ୍ୟ ଏକ ପୃଥିବୀ ପାଲଟେ,
ତହିଁ ମୋ କୁଣ୍ଠିତ ପଦ ବାହି ଗୃଲେଁ କଣ୍ଟକିତ ପଥେ ।

ବର୍ଷିର ଅଞ୍ଜନ
ପୋଛୁ ବା ଦେଇଛୁ ତୁମ ପଦର ଅଙ୍କନ
ସେ ଧୂଳିର ସ୍ତରୁ ?

ଅବା ଏହା ଏକ ରୁକ୍ଷ ମରୁ—
ଶୁଷ୍କ ବାଲି ସ୍ତୂପ ?
ତୁମ ପଦ ପଦ୍ମରାଗ ଚିହ୍ନ ଖୋଜେଁ ତଥାପି ମୁଁ
ଏକ କୃପଣର ଅନୁରୂପ ।
ଡାଆଣୀ ଆଲୁଅ ଦୂରେ
ବାଢ଼େ ତାର ମାୟା
କ୍ୱଚିତ୍ କଳା ଛାୟା
ପ୍ରଦର୍ଶନ କରେ ପ୍ରେତ ଯୋନି;
ସମ୍ମୁଖେ ଯୋଗିନୀ ।

ଏ ସମସ୍ତ ଅବହେଳି
ଚାଲଇ ମୁଁ କରିଣ ସଞ୍ଚୟ
ତନୁ ମନେ
ବର ଓ ଅଭୟ,
ତୁମର ଗୃହ ପ୍ରାଙ୍ଗଣ
ଦ୍ୱାରର ସମୀପ
ଗୁଣ୍ଠନ ଛାୟାରେ ଯହିଁ ଜାଳି ରଖ
ଏକ ସଞ୍ଜ ଦୀପ ।

## କୋଣାର୍କର ସେଇ ଲାବଣ୍ୟବତୀ ପ୍ରତି

— ୧ —

ଆସ ତୁମେ ଗୁଡ଼
    କୋଣାର୍କ ଶିଳାଭୂମି
ସ୍ତନଚୂଡ଼ା ଗୁମ୍ଫା
    ଛୁଆଁ କଟୀତଟ
    ମନ୍ଦରେ କ୍ଷଣ ରୂପ
ବିଭ୍ରମ ବେଳା
    ଭ୍ରମଣ ବିଳାସୀ ରୂପ
ଗୁଡ଼ ତୁମେ ଆସ,
ହାତେ ମୋର ତୁମ
    ନଗ୍ନ ହାତଟି ରଖ !

— ୨ —

କବରୀରୁ ତୁମେ ନିକ୍ଷେପ କର
        ରାତର ଚମ୍ପୀ ଫୁଲ
ଅଶ୍ଳଥ ବସନ ସମ ନିକ୍ଷେପ କର
ହାନ୍ତବଳୟ ବିକଶିତ କର
ତରୁଣ ତମାଳ ତନୁ ନେଇ ତୁମେ ଆସ
ଉଦ୍ଧତ ପ୍ରେମ ଉଦ୍ୟତ ହାତେ ନେଇ
    ହାତେ ମୋର ତୁମ ନଗ୍ନ ହାତଟି ରଖ !

— ୩ —

ଶଙ୍ଖର ରବେ ଗାୟତ୍ରୀ ସୁର ତୋଳି
ଜାହ୍ନବୀ ସମ
ସ୍ନିଗ୍ଧ କେଉଁ କ୍ଷମଶୀଳା
ଆସିଥିଲ ତୁମେ ରଜନୀଗନ୍ଧା,
କେୟୂର ବଳୟ ହାତେ,
ବିଳମ୍ବିତ ସେ ନୀବୀ ମୋକ୍ଷଣ
ବାସର ମଦିର ମାୟା
ସାଗରୋଚ୍ଛ୍ୱାସ ଶପଥେ ଶପଥେ
ସେ ଧନ ସେ ହାତ
ରଖିଥିଲ ମୋର ହାତେ !

— ୪ —

ଆଜ ଏଇ ଦେଖ
ରଣକ୍ଲାନ୍ତ ସେ ହାତ
ରାଜ୍ୟ ବିଜୟୀ ଆଶା ସବୁ
ମରୁ ଲୀନ
ଭୂମିଶାୟିନୀ ସେ ମକର ମୁକୁଟ—
କେତୁ
ଢଗନ୍ତେ କ୍ଷମ ଦଣ୍ଡ !

— ୫ —

ଦୂରେ ଦେଖାଯାଏ ନୀଳ ଆଭ ଲେଖା
ସେ କେଉଁ ପାଣ୍ଡୁ ଭୂମି
ମାତୃ ସନ୍ତାନୀ ମନ ତନ୍ତ୍ରୀ ଗୃହେଁ
ଜ୍ୟୋସ୍ନା ଧୂସର ଶାଖା,
ଦୁଇ ଜଣେ ମୃଦୁ ମଧୁର କୂଜନେ
ବଧୂର ଯାମିନୀ ଶେଷ
ସ୍ୱର୍ଗ ନିଆଡ ଛୁଟୀ ।

— ୬ —

ଜୀବନର ସେଇ ଶୂନ୍ୟ କଳସ
ମୁଗ୍‌ଧ ହାସରେ
ଭରି ତୁମେ ଏଥେ
ଆସ ।
ଚୁମ୍ବନ ଶୀତଳ ହାତେ ମୋର ତୁମ
ନଗ୍ନ ହାତଟି ରଖ !
ନଗ୍ନ ହାତଟି ରଖ !!

## ଶ୍ୟେନ

କର ମତେ
ଅଗ୍ନିଚକ୍ଷୁ ଶ୍ୟେନ
ଚଞ୍ଚୁ ମୁନେ ଲେପି ଦିଅ
ମୃତ୍ୟୁ ଅନ୍ଧ ଫେନ
ଡେଣାରେ ଡେଣାରେ ଦିଅ
ସଂବର୍ତ୍ତକ ମେଘର ସଂହତି
ସିଂହର ନୈସଙ୍ଗ ଦିଅ
ଦିଅ ଜ୍ୟୋତିରିଙ୍ଗଣର ଗତି
ଝଡ଼ ମନ୍ଥିତ ସାଗର ଗର୍ଜମାନ କଣ୍ଠୁ କର
ସଘନ ସଫେନ
କର ମତେ
କର ମତେ ଶ୍ୟେନ ।

ନିମ୍ନେ ଗୃଧ୍ରଁ ବନ ବିଲ
ପଠା ପାଠ ଚଢ଼ା
ଧର୍ମଧ୍ୱଜୀ ବକ ସଂପ୍ରଦାୟ ପାଇଁ
ପାଲଟେ ଆଖଡ଼ା
ଚଛର୍କ୍ଷ ଓ କ୍ଷ୍ୱେଡ଼ ନାଟ୍ୟ
ହୁଏ ଅଭିମାତ
ମୀନ ସଂଘ ଧରେ ତାର
ପାଲଟା ସଂଗୀତ ।

ଏ ସୁଆଙ୍ଗ ମଧ୍ୟେ ତୁଚ୍ଛେଁ
ନର୍ତ୍ତମାନ ବକ ବୈଷ୍ଣବର
ଗ୍ରୀବା ଦଣ୍ଡ ଭଗ୍ନ କରି,
ପଦ କଣ୍ଟକର
ରକ୍ତ କ୍ଲିଷ୍ଟ ନଖେ ନଖେ
ଶ୍ୱେତ ପରର ପୋଷାକ
ଛିନ୍ନ କରି ଚକ୍ଷୁ କରେଁ
ସବୁ ଲେଣ ଦେଣ,
କର ମତେ
କର ମତେ ଶ୍ୟେନ ।

# ପଦ ଧ୍ୱନି

— ୧ —

ମୁକ୍ତ କର କର୍କଶ ଶୃଙ୍ଖଳ
ମୁକ୍ତ କର ଗ୍ରୀବା !
ଅନେକ ମର୍ତ୍ତ୍ୟ ପିଣ୍ଡର
ସ୍ୱାଦ ଲେଖି ଜିହ୍ୱା
ପାଲଟେ ଅବାକ୍ ! ଗୁଡ଼ ନଈ ପାଟ ବିଲ
ଶିଉଳୀର ମଗ୍ନ ମାଳ
ପଲ୍ୱଳ ଓ ବଟ ତରୁ ଶାଖା,
ଯେ ତମାଳ ତାଳୀ ବନରାଜି ମାଳା-ମୁଖର ସାଗର
ଡହ୍ନିଁ ଯିବ
ଏକାନ୍ତ ବଳାକା !

— ୨ —

ଖୋଲ ଖୋଲ ବାହୁ ଡୋର
ଝିଲମିଲ ଜୀବନର ଯେତେ କର୍ମସୂଚୀ
ଇତି କର;
ପ୍ରାଣେ ପ୍ରାଣେ ଜାଗେ ଅଶ୍ରୁତ
ନୂତନ ଆହ୍ୱାନେ କାର
ଯିବା ପାଇଁ ଜଡ଼ ବସ୍ତୁ ଦୂରେ
କୋକନଦେ କୋଣାର୍କ ବନ୍ଦରେ
ଚିଲିକାର ଉପକୂଳେ ରାମେଶ୍ୱରେ
କଲ୍ଲୋଳ ସାଗରେ

ଆଜ ଦୂରେ
    କୁୟାଲ ଲମ୍ଫୁର
ପାମ୍ ଗଛେ — ଢାଓ୍ୱାଇ ସିନ୍ଦୂର
ନିସ୍ତରଙ୍ଗ ବୁକେ
ଏକକ ଉଲ୍ଲୁକେ !

— ୮ —

ତୁମେ ଥାଅ ଏଇ ପୁରେ  ସୁବର୍ଣ୍ଣ ମୁକୁରେ
ନିଜ ମୁଖଟିକି ଦେଖ,
    ସୁଦୀର୍ଘ ଚିକୁରେ
କବରୀ ରଚନା କର
    ଲେଖି ବସି ଟୀକା
ଲଲାଟରେ; ପାର ହୋଇ
    କୁମ୍ଭୀର ପରିଖା
ଆସିବ ତୁମକୁ ମୁକ୍ତ ଦେବାପାଇଁ କେଉଁ ଯୁବରାଜ
ତା'ର ପାଇଁ ଚନ୍ଦ୍ରହାର କାଂଚଦାମ ମର୍କତ ମେଖଳା
ମାଣିକେ ମାଣିକେ
    ସାଜ ରୂପ ସାଜ !

— ୯ —

ମତେ ମୁକ୍ତ କର, ମନେ
    ଲାଗିଅଛି ସମୁଦ୍ରର ସ୍ୱାଦ
ରଖ ତୁମ ତର୍କ ଭାଷ୍ୟ
    ବାଦ ବିସମ୍ବାଦ
ପଲ୍ଲୀର ଯଶ ଗାଥା
    ଜୋକ ଶାମୁକାର
ଗୌରବ ଉଜ୍ଜ୍ୱଳ ଇସ୍ତାହାର ।

— ୫ —

ନାରୀ ! ଶୁଣ, ଶୁଣ ତେବେ
ଶତାବ୍ଦୀର ଶୁଭେ ପଦ ଧ୍ୱନି
ତୁମର ପ୍ରାଙ୍ଗଣେ, ଭର ନିଖିଳ ଅବନୀ ।

ଖୋଲ ରୁଦ୍ଧ ଦ୍ୱାର
ଭୁଲ ଅହଂକାର
ସେ ରୁଦ୍ରରେ କର ନମସ୍କାର !

ସେ ଆସେ ସେ ଉନ୍ମୁକ୍ତ
ଭାସ୍କର
କାଳର କଳା କଷଟି ପ୍ରସ୍ତରରେ
ଲେଖିବାକୁ ସ୍ୱର୍ଣ୍ଣ ଗାରେ,
ନୂତନ ସ୍ୱାକ୍ଷର ।



ଜୟପୁର ପ୍ରକାଶ ପ୍ରେସ୍‌ରେ ଶ୍ରୀ ରାମନାଥ ପଣ୍ଡାଙ୍କ ଦ୍ୱାରା ମୁଦ୍ରିତ ।

